# ପାଦ୍ରୀ ଓ ପାରା

---

ମୂଳ ଇଂରାଜୀ : ୰ ମୁଲକ୍ ରାଜ୍ ଆନନ୍ଦ୍

ଉପନ୍ୟାସାନୁବାଦ : ଅୟସ୍କାନ୍ତ



ପାଦ୍ରୀ ଓ ପାରା

ମୂଳ ଇଂରାଜୀ : ୰ ମୁଲକ୍ ରାଜ୍ ଆନନ୍ଦ୍

ଉପନ୍ୟାସାନୁବାଦ : ଅୟସ୍କାନ୍ତ

ପ୍ରକାଶକ : ପ୍ରବାହ, ଗୋବିନ୍ଦପୁର,

ଜାହାନପୁର, ଦେବୀଦ୍ୱାର, ଯାଜପୁର-୭

ମୁଦ୍ରଣ : ଗ୍ରାଫିକ୍ସ ଓ୍ୱାଲ୍ଡ, ବାଦାମବାଡ଼ି, କଟକ-୯

ଲିପି ସଂଯୋଜନା : ମା' ଗ୍ରାଫିକ୍ସ, ବାଦାମବାଡ଼ି, କଟକ

ପ୍ରଥମ ସଂସ୍କରଣ : ଦଶହରା - ୨୦୦୯

ମୂଲ୍ୟ : ଟ ୩୦/-

---

**PADRI O PARA**

[An English Short Story]

Writer : *Late Mulak Raj Anand*

Trans-created to Novel By . *Ayaskanta* Rs. 30.00

# ମୁକ୍ତି-ମଣ୍ଡପ

ଅଷ୍ଟମ ଶ୍ରେଣୀ ପଢ଼ିବାବେଳେ ମୋ' ବାପା ମୋତେ ଦେଇଥିଲେ କେତୋଟି ଭଲ ବହି। ସେ ସବୁ ଇଂରାଜୀରେ ଲେଖା। ଆମ ଘରର କମଳାଗଛକୁ ବୋଧିଦ୍ରୁମ ଭାବି ସେଇଠି ପଢ଼ାପଢ଼ି ଚାଲେ। ବାପାଙ୍କ ସାଥିରେ ବିଚାର ବିମର୍ଶରେ ଭାଗ ନିଅନ୍ତି କବି ଶ୍ରୀନିବାସ୍ ବେହେରା, ପ୍ରସିଦ୍ଧ ସଂଗ୍ରାହକ ଓ ଜଣେ ଭଲ ପାଠକ, ଲେଖକ ପ୍ରଫୁଲ୍ଲ ବେହେରା, ଥରେ ଦି'ଥର ଯାଇଚନ୍ତି ବିଶିଷ୍ଟ ଔପନ୍ୟାସିକ ଗୌରାଙ୍ଗ ଚରଣ ଦାସ, କବି କନକଲତା ସିଂ, କବି ସୁଧାକର ଦାସ୍, ଚିତ୍ରକର ବିଜୟ ମିଶ୍ର, କବି ନିର୍ମଳ ମିଶ୍ର, ସୁମନ୍ ଦତ୍ତ, ଦିଲୀପ୍ ସିଂ, ଲକ୍ଷ୍ମୀଧର ଶ୍ରୀଚନ୍ଦନ୍ ଏପରିକି ତତ୍କାଳୀନ ବିଧାୟକ ବିଭୁଧେନ୍ଦ୍ର ପ୍ରତାପ୍ ଦାସ୍ ଓ ମହେଶ ସାହୁ। ବୋଉ ଚା' ଦେବା ସହ ଗୋଟେ ବଡ଼ ଷ୍ଟିଲ୍ ଥାଳିରେ ଥାଳିଏ ମୁଢ଼ି ମିକ୍ସଚର୍ ଥୋଇ ଦିଅନ୍ତି। ଚା'ରେ ସମୀକ୍ଷା, ତର୍ଜମା ସବୁକିଛି। ମୁଁ ଅଙ୍କ କଷୁଥାଏ ଆଉ ସେ ସବୁ ଶୁଣୁଥାଏ। ବାପାଙ୍କ ମୁହଁର Indo-anglian literature କଥା ଶୁଣି ସେହି ସବୁ ବହି ପଢ଼ିବାକୁ ମୁଁ ମନସ୍ଥ କଲି। ବାପାଙ୍କ ମିନି ଲାଇବ୍ରେରୀରୁ ପ୍ରଥମେ ପଢ଼ିଲି A.P. Sarokin ଙ୍କ 'Sane Sex order' ଓ Annais Min ଙ୍କ Erotica. ଏସବୁ ଯେ ବାହାର ବହି, ଜୀବନର ଭୂମିକୁ ପୋଡ଼ାଭୂଇଁ କହୁଥିବା Eliotଙ୍କୁ ଜମା ପଢୁନଥିଲି। ସେଇ ଭାବଧାରାରେ ଉଦ୍‌ବୁଦ୍ଧ ବରଂ ଓଡ଼ିଆ କବି ଗୁରୁ ମହାନ୍ତିଙ୍କ ସମୁଦ୍ରସ୍ନାନ ପଢ଼ିଥିଲି।

ବାପାଙ୍କ ବହିଥାକରୁ ଲୁଚାଇ ପଢ଼ିଚି ଗୋଟେ ବହି, ଯା' ଆଜିଯାଏଁ ଭୁଲି ପାରିନାହିଁ। ସେ ହେଉଚି 'Trapped' by Narendrapal Singh. ଏହି ବହିଟି ପଞ୍ଜାବ୍ ସରକାରଙ୍କ ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ କିନ୍ତୁ ପରବର୍ତ୍ତୀ କାଳରେ ଭାରତ ସରକାରଙ୍କ ଦ୍ୱାରା ଅଶ୍ଳୀଳତା ପାଇଁ ନିଷିଦ୍ଧ କରାଯାଇଛି। obscenity ପାଇଁ ban କରାଯାଇଚି ବୋଲି ପ୍ରଚ୍ଛଦରୁ ଦେଖି ସେ ବହି ପଢ଼ିଲି। ଏ ବହି ପଢ଼ି ସାରିବା ପରେ ମୁଁ ସାତଦିନଯାଏଁ ଭଲରେ ଖାଇପାରିନାହିଁ କି ଶୋଇପାରି ନାଇଁ। ପରେ ପରେ ବାପା ମୋତେ ଦେଲେ ପଢ଼ିବାକୁ ଦୁଇଟି ଯୁଗାନ୍ତକାରୀ ବହି (୧) ମୁଲକ୍‌ରାଜ୍ ଆନନ୍ଦ୍‌ଙ୍କ କୁଲି, (୨) ଆର୍.କେ. ନାରାୟଣଙ୍କ 'ଗାଇଡ୍'। ଏ ଦୁଇଟି ବହି ମୋ'

ଅନୁବାଦ୍ କରିବାର ପ୍ରବଣତାକୁ ବହୁଗୁଣ ବଢ଼ାଇଲା 'କୁଲି' ଉପନ୍ୟାସ ମୋତେ ଏତେ ଅଭିଭୂତ କଲା ଯେ, ମୁଁ ତା'କୁ ଦୁଇଦିନ ଧରି ଅଣନିଃଶ୍ୱାସୀ ହେଇ ସାରିଦେଲି। ସେହିଦିନୁ ମୁଲକ୍‌ରାଜ୍ ଆନନ୍ଦ୍‌ଙ୍କ ଲେଖା ବା ଅନୁବାଦ ଦେଖିଲେ ମୁଁ ଖୋଜି ପଢ଼େ। ଆର୍. କେ. ନାରାୟଣଙ୍କ 'ଗାଇଡ୍', 'ମାଲ୍‌ଗୁଡ଼ି ଡେଜ୍' ମୋତେ ବହୁତ ଭଲ ଲାଗେ। 'ଗାଇଡ୍' ଫିଲିମ୍ ବି ମୁଁ ଦେଖିଚି। ମାଲ୍‌ଗୁଡ଼ି ଡେ଼ଜ୍ ମୁଁ ପଢ଼ିଲି। ଏଥିରେ ଥିବା ବ୍ୟଙ୍ଗ ମୋତେ ବହୁତ ଭଲ ଲାଗିଲା। ମାଲଗୁଡ଼ି ଡେଜର ଟାଇଟିଲ୍ ସ୍ୱର ମୁଁ ବଂଶୀରେ ବଜାଉଥିଲି।

ହଠାତ୍ ଦିନେ ଭୁବନେଶ୍ୱର ପୁସ୍ତକମେଳାରୁ ବହିଟିଏ କିଣିଲି "Lajwanti And Other Stories" ଲେଖକ ହେଲେ ମୁଲ୍‌କ୍‌ରାଜ୍ ଆନନ୍ଦ୍। ସେହି ବହିର ଗଳ୍ପ 'ପାଦ୍ରୀ ଓ ପାରା' (Pegion And The Priest) ମୋତେ ବହୁତ ଭଲ ଲାଗିଥିଲା। ଏହାକୁ ଗୋଟେ ଟେଲି ଫିଲିମ୍ କରିବି ବୋଲି ଭାବିଥିଲି ପରେ ଜଂଜାଳଗ୍ରସ୍ତ ହେଇ ସେ ହେଇପାରିନାହିଁ। ଭାବିଲି ଏହି ଦୀର୍ଘଗଳ୍ପକୁ ଉପନ୍ୟାସ କରିବି। ଉପନ୍ୟାସିକାଟିଏ ହେଇପାରିବତ ? ମର୍ମାନୁବାଦ କରି ତାଙ୍କ ଉପନ୍ୟାସରେ ପରିବର୍ତ୍ତନ କରିବା କଷ୍ଟ, ପୁଣି ଆନନ୍ଦ୍‌ଙ୍କର ଲେଖାକୁ, ଭୁଲ୍ ଭଟ୍‌କା ତ ଥିବ ନିଶ୍ଚୟ ଭୁଲ୍‌ଥିଲେ କ୍ଷମା ଦେବେ।

ଶେଷରେ ମୁଲକ୍‌ରାଜ୍‌ଙ୍କ ଭାଷାରେ ମୁଁ ପଚାରେ ସବୁ ଫାଦର୍‌ଙ୍କୁ 'ଈଶ୍ୱର ସମସ୍ତଙ୍କୁ ପ୍ରେମ କରନ୍ତି, କାନ୍ଥ ବାଡ଼ରେ ଲେଖା ଅଛି। ହେଲେ 'ପ୍ରେମରେ ଗୁଳି ଶବ୍‌ଦ'! ଏ' କ'ଣ ଫାଦର୍, ତମ ଈଶ୍ୱରପୁତ୍ରଙ୍କୁ ଟିକେ ପଚାର।

ଆସନ୍ତୁ ପଢ଼ିବା 'ପାଦ୍ରୀ ଓ ପାରା' (Pegion And the Priest)।

— ଅୟସ୍‌କାନ୍ତ

ଟୀରସୁଜନପୁର ଶିବ ମନ୍ଦିରରେ, କରିଡ଼ରରେ କୋଣ ଅନୁକୋଣରୁ ଘୁମ୍‌ରି ଘୁମ୍‌ରି ବାହାରି ଆସିଲେ, ପାରାବରେ ଦଳ ଘୁମ୍‌ରା ସୁରରେ ପରସ୍ପର କଥା ହେଇ ସେମାନେ ଫେରୁଥିଲେ ବସାକୁ ସଞ୍ଜ ହେଇ ଆସୁଥିଲା। ଦିନଟାଯାକର ପରିଶ୍ରମ ପରେ ଦିହ ଖୋଜୁଥିଲା ଟିକେ ବିଶ୍ରାମ ଓ ସାଥୀ ସହ ପ୍ରେମ। ନୀରବତା ପକ୍ଷୀର ବ୍ୟାକରଣ, ସେଇ ନୀରବତା ଭିତରେ ବି ସବୁ ବୁଝେ, ଅନୁଭବ୍ କରେ ପକ୍ଷୀ। ରାଗ ରୋଷ, ଘୃଣା, ପ୍ରେମ, ଲୌକିକ, ଅଲୌକିକ ଭାବ ସବୁ ସେ ଅଙ୍ଗେ ନିଭାଏ। ସବୁ ପ୍ରାଣୀ ପରି ସେ। ସମାଜରେ ବଞ୍ଚେ। ବଞ୍ଚିବାକୁ ପ୍ରେମ କରେ, ପ୍ରେମକୁ ପ୍ରେମ କରେ। ପ୍ରେମର ଜିନ୍ଦାବାଦ୍ ଆଉ ମୃତ୍ୟୁର ମୁର୍ଦ୍ଦାବାଦ୍ କରେ। ସମସ୍ତଙ୍କୁ ଜଣାଇଦିଏ ଯେ, ପ୍ରେମ ଅଜେୟ, ଅମର, ଚିରନ୍ତନ। ସବୁ କିଛିର ଊର୍ଦ୍ଧ୍ୱରେ। ପ୍ରେମ ହିଁ ଭଗବାନ୍। ସବୁ ସଜୀବଙ୍କ ପରି ଏ ପାରାବରେ ଦଳ ପ୍ରେମକୁ ପ୍ରଣାମ କରନ୍ତି ଓ ଜୀବନ କଟାନ୍ତି।

ସେ ଜାଣେ ଈଶ୍ୱର ସତ୍ୟ। ସତ୍ୟ ହିଁ ଶିବ। ଶିବ ହିଁ ପ୍ରେମ। ପ୍ରେମ ହିଁ ସୁନ୍ଦର। ସେ ଡାକେ, ହୋ ଜଗତ୍‌ର ସ୍ୱାମୀ, ଜାଗି ଉଠ, ଦେଖ, ଜୀବନ୍ ଉଜାଗର। ସତ୍ୟଂ, ଶିବଂ, ପ୍ରେମଂ, ସୁନ୍ଦରଂ।

ହଁ ପ୍ରାର୍ଥନା ତ ଶୁଭୁଥିଲା ଶିବ ମନ୍ଦିରରୁ ଏମିତି। ସତ୍ୟ ହିଁ ଶିବ ହେ ଈଶ୍ୱର ସତ୍ୟ ହେ, ଶିବ୍-ଭି ସୁନ୍ଦର ହେ। ସତ୍ୟଂ ଶିବଂ ସୁନ୍ଦରମ୍ ଅନତି ଦୂରରେ ମାଇକ୍‌ରେ ବି ବାଜୁଥିଲା। ପ୍ରେମ ଗୀତ, ଯେ ଅଜ୍‌ନବୀ, ତୁ ଭି କଭି, ଆୱାଜ୍ ଦେ' କହିଁଦେ, ମୈ ୟହାଁ ଟୁକ୍‌ଡ଼ା ମେଁ ଜୀରହାହୁଁ, ତୁ କଭି ଟୁକ୍‌ଡ଼ା ମେଁ ଜୀ ରହି ହେ, ପାଛୀ ପାଛୀ ପର୍‌ଦେଶୀ।

ଏଣେ ଜୋର୍‌ରେ ଘୁମ୍‌ରି ପାରାଟିଏ ଉତ୍ତେଜିତ ହେଇ ଉଠିଲା କାରଣ ପଣ୍ଡିତ୍ ପରମାନନ୍ଦ ବାହାରି ଆସିପାରନ୍ତି ଭିତରୁ ଆଉ ତା'କୁ ହୁରୁଡ଼େଇ ପାରନ୍ତି ସେ ତରଙ୍ଗ ତରଙ୍ଗ ହେଇ ଚାହୁଁଥାଏ। ବୋଧେ କ'ଣ ଖୋଜୁଥାଏ କି କ'ଣ ଉତ୍ତେଜିତ ହେଉଥାଏ। 'ଗାଏନେକ୍' ନାମକ ପାରାଟି ଏଥର ସ୍କାଇଲାଇଟ୍ ଦେଇ ଉପର ନଳିର ଆଲୁଅକୁ ଦେଖୁଥିଲା। ସେଇ ସ୍କାଇଲାଇଟ୍ ଏକ ଛୋଟ ଝରକା ପରି ସେ, ସେଠାକୁ ଅନଉଥିଲା। କାଳେ ତା' ପ୍ରେମିକା 'ସିଲ୍‌ଭର୍‌ଟେଲ୍' ସେଇ ବାଟେ ଆସିଯିବ।

ସିଲଭର୍‌ଟେଲ ସେମିତି ଦିବାନୀ। ସବୁ ପ୍ରେମିକାଙ୍କ ପରି ହଠାତ୍ ଆସିଯିବ ଆଉ ମୁହଁ ଫୁଲାଇ ବସିଯିବ, କହିବ, ହେଁ, କ'ଣ ଏଯାଏଁ ଆସିନ। ସବୁ ପ୍ରେମିକାଙ୍କ

ପରି 'ଗାଏନେକ୍' ସବୁ ରାଣ, ନିୟମ ଖାଇଲେ ଯାଇ ସିଲଭରଟେଲ୍ ଶାନ୍ତ ହେବ। ଗାଏନେକ୍ ସେମିତି ଅନେଇଁ ଥିଲା ସ୍କାଇଲାଇଟ୍ ଆଡ଼େ।

'ଗାଏନେକ୍' ଏଥର ସ୍କାଇଲାଇଟ୍ ଆଡ଼କୁ ଚାହିଁ ଘୁମ୍‌ରିଲା। ଆଉ ମୟୂର ପରି ପୁଚ୍ଛ ଟେକି ଜୋର୍‌ରେ ଫଡ୍ ଫଡ୍ କଲା। ସିଲ୍‌ଭରଟେଲ୍ ପାଇଁ ତା' ମନ ବ୍ୟାକୁଳ ହେଇ ଉଠୁଥିଲା। କୁଆଡ଼େ ଗଲା ସିଲ୍‌ଭର୍‌ଟେଲ୍, ସେ, କ'ଣ ଜାଣିପାରୁନି, ସେ, ଏତେ ସମୟ ତା'କୁ ଅପେକ୍ଷା କଲାଣି ଅଥଚ ସେ ଆସିପାରୁନି। ଏପଟେ ପଣ୍ଡିତ ଆସିଯିବେ।

ଧୀର ଭାବେ ଘୁମ୍‌ରି, ସିଲଭର୍‌ଟେଲ୍, ଗାଏନେକ୍ ଅପେକ୍ଷା ଆସ୍ତେ ବସିଥିଲା। କାରଣ ସେ ପଣ୍ଡିତଙ୍କ ବେଡ୍‌ହୋଲ୍‌ଡର ଉପରେ ବସିଥିଲା। ସେଠି ବେଡିଂଟି ଠାକୁରଙ୍କ ପାଖ ଅଗଣାରେ ଗୁଡ଼ା ହେଇ ଗୋଟେ କୋଣକୁ ରଖାଯାଇଥିଲା। ସେଠି ବସି ମାଈ ପାରାଟି ଗୁଡ୍‌ଗୁଡ୍ ହେବାକୁ ଲାଗିଲା।

ଦୁଇଟିଯାକ ପକ୍ଷୀର ଘୁମ୍‌ରା ଆଉ ଗୁଡୁର୍‌ଗୁଡ୍ ଶୁଣି ପଣ୍ଡିତେଙ୍କ କପାଳ କୁଞ୍ଚିତ ହେଲା ପାରାଦୁଇଟି ଯେମିତି ପରସ୍ପର ପଛରେ ଗୁଣ୍‌ଗୁଣ୍ ହଉଥାନ୍ତି। ତା'ର ଗୁଡୁର୍‌ଗୁଡ୍ ଘୁମ୍‌ରାର ଅଜବ ଶବ୍‌ଦ ପାଦ୍ରୀଙ୍କ କାନରେ ବାଜିଲା। ତାଙ୍କ ପ୍ରାର୍ଥନା ଗଳା ପାଖରେ ରୁନ୍ଧି ହେଇ ରହିଗଲା। ମେରୁ ହାଡ଼ ପାଖରେ ପବନ ଯେମିତି ଅଟ୍‌କି ଗଲା। ତେଣୁ ଦାନ୍ତଚିପି ସେ ଗୋଟେ ଚାପା ହୁଇସିଲ୍ ଶବ୍‌ଦ କଲେ। ପାରା ଦୁଇଟିକୁ ହୁରୁଡ଼େଇ ଦେବାକୁ ହୁସ୍‌ହୁସ୍ କରି।

ପାଦ୍ରୀଙ୍କ ଦାନ୍ତଚିପା ହୁସ୍ ଶବ୍‌ଦ ପ୍ରେମ ପକ୍ଷୀଙ୍କ ପ୍ରଣୟ ନିବେଦନକୁ ରୋକି ପାରିନଥିଲା। ପ୍ରେମରେ ଆର୍ଥ୍ ଆଣିପାରିନଥିଲା। ସେଇ ଶବ୍‌ଦ ଯଦିଓ ପତଳା ହୃଦୟକୁ ଥରାଇ ଦେଇଥିଲା। ତଥାପି ସେମାନେ ବେଶି ଜୋର୍‌ରେ ଘୁମ୍‌ରି, ଡେଣା ଅଳ୍ପ ଫଡ୍‌ଫଡ୍ କଲେ। ଯେମିତିକି ପଣ୍ଡିତଙ୍କ 'ହୁସ୍' ଶବ୍‌ଦକୁ ଚାଲେଞ୍ଜ୍ କରୁଥିଲା।

ସାଧୁ ଏଥର ପ୍ରାର୍ଥନା ଆରମ୍ଭ କଲେ। ଇତି ମଧ୍ୟରେ ସିଲ୍‌ଭର୍‌ଟେଲ୍ ଘୁମ୍‌ରା ଘୁମ୍‌ରି ବେଡ୍‌ହୋଲ୍‌ଡର୍ ଉପରେ ବସିଲା। ମାଈ ପାରାଟି ସେଇ ବେଡିଂରେ ବସି ନିଜ ପର ଭିତରେ ଗୁଡୁର୍‌ଗୁଡ୍ ହେଇ ଏପଟ ସେପଟ ହେବାକୁ ଲାଗିଲା।

ଦୁଇଟିଯାକ ପକ୍ଷୀର ଘୁମ୍‌ରା ଆଉ ଗୁଡୁର୍‌ଗୁଡ୍ ଶୁଣି ପଣ୍ଡିତଙ୍କ କପାଳ କୁଞ୍ଚିତ ହେଲା। ପ୍ରାର୍ଥନା ସମୟରେ କୁତ୍ସିତ ପ୍ରେମ। ପବିତ୍ର କାମକୁ ଅପବିତ୍ର କରିବାକୁ ଯେମିତି ପକ୍ଷୀ ଦୁଇଟି ବଦ୍ଧ ପରିକର। ପାରା ଦୁଇଟି ଯେମିତି ପରସ୍ପର ପଛରେ ହେଉଥାନ୍ତି। ପାଦ୍ରୀଙ୍କର ଭ୍ରୂକୁଞ୍ଚନ ହେଉଥାଏ। ସେ ଚିନ୍ତା କରୁଥାନ୍ତି ଯେ, କେମିତି ପୂଜା କରିବେ ଏମିତି ପରିସ୍ଥିତିରେ। ଦୁଇଟି ପକ୍ଷୀ ପରସ୍ପର ଚଞ୍ଚୁ ଘଷାଘଷି ହେଉଥିବେ, ପ୍ରେମ କରୁଥିବେ, ଏମିତି ସମୟରେ କେହି କ'ଣ ପ୍ରାର୍ଥନା କରିପାରେ।

ତାଙ୍କ ପ୍ରାର୍ଥନା ଗଳା ପାଖରେ ରୁନ୍ଧି ହୋଇଗଲା। ମେରୁ ହାଡ଼ ପାଖରେ ପବନ୍ ଯେମିତି ଅଟ୍‌କିଗଲା। ତେଣୁ ଦାନ୍ତ ଚିପି ଚିପି ଯୋଉ ଚାପା ଶବ୍ଦ କଲେ, ତାହା ଥିଲା ପାରା ଦୁଇଟିକୁ ହୁରୁଡ଼େଇବାକୁ।

ପାଦ୍ରୀଙ୍କ ପ୍ରାର୍ଥନା ଏମିତି ବାରମ୍ବାର ଭାଙ୍ଗିବାକୁ ଲାଗିଲା। ବାରମ୍ବାର ପ୍ରାର୍ଥନା ଭିତରେ ଧସେଇ ପଶିଥିବା ମାନବିକ ତ ନୁହଁ ପାଶବିକ ପ୍ରେମ ପାଦ୍ରୀଙ୍କ ପ୍ରାର୍ଥନା ପୂରଣ କରିବାକୁ ଦଉନଥିଲା ପାଦ୍ରୀ ବରଂ ରାଗୁଥିଲେ ଓ ଯେକୌଣସି ପ୍ରକାରେ ପକ୍ଷୀ ଦୁଇଟିକୁ ହୁରୁଡ଼େଇବାକୁ ଚାହୁଁଥିଲେ। ସେ ଯେତିକି ହୁରୁଡ଼େଇବାକୁ ଚାହୁଁଥିଲେ। ପକ୍ଷୀ ଦୁଇଟି ସେତିକି ପ୍ରେମାଳାପରେ ମଗ୍ନ ହେଉଥିଲେ।

ପଣ୍ଡିତଙ୍କର 'ହୁସ୍ ହୁସ୍' ପ୍ରେମପକ୍ଷୀଙ୍କ ପ୍ରଣୟ ନିବେଦନରେ କିଛିବି ଆଞ୍ଚ୍ ଆଣି ପାରିନଥିଲା। ବରଂ ଆଗଠୁ ବେଶି ଦିବାନୀ ହେଇ ଦି' ଜଣଯାକ ପରସ୍ପର ଆଡ଼କୁ ମୁହାଉଁ ନଥିଲେ, ବରଂ ଲାଗୁଥିଲା ବଜ୍ରଶପଥ ନେଇଚନ୍ତି ଯେ ମରିଯିବେ ପଛେ ପ୍ରେମ କରିବେ।

ସାଧୁ ଏଥର ସବୁକିଛି ସହି ନେଇ ପୁଣି ଠିଆ ହେଲେ ଓ ଆଖି ବନ୍ଦ କଲେ ଏବଂ ପ୍ରାର୍ଥନା ଉଚ୍ଚାରଣ କରିଚାଲିଲେ 'ନମଃ ଶିବାୟ ଓଁ ନମଃ ଶିବାୟ' ... ନାଗେନ୍ଦ୍ର ହାରାୟ ତ୍ରିଲୋଚନାୟ, ଦାରିଦ୍ର୍ୟ ଦୁଃଖ ଦହନାୟ ନମଃଶିବାୟ ! ପ୍ରାର୍ଥନାର ଶବ୍ଦ ଶୁଣିବି ସିଲ୍‌ଭର୍‌ଟେଲ୍ ଓଲେଇ ଝିଅଟିଏ ପରି ବେଡ୍ ହୋଲ୍‌ଡ଼ର୍ ଉପରେ ସେଇମିତି ବସିଥିଲା, ଯେମିତିକି ଭୋଲାଭାଲି ଝିଅଟିଏ, କିଛି ବି ଜାଣିନି।

ଏସବୁ କାଣ୍ଡକାରଖାନାରେ ଭକ୍ତମାନେ ବ୍ୟଥିତ ହେଲେ। ପୂଜାରେ ବିଘ୍ନ ହେବାରୁ ପଣ୍ଡିତେ ବି ବିରକ୍ତ ହେଲେ। ସେମାନେ କହିଲେ ବେଡିଂଟି ଅନ୍ୟ କେଉଁ ଜାଗାରେ ରଖିଲେ ଭଲ ହେବ। ପାରାଟି ଆଉ ପ୍ରାର୍ଥନାରେ ବିଘ୍ନ ଘଟାଇ ପାରିବ ନାହିଁ।

ଖସ୍‌ଖସ୍ ଶବ୍ଦ ଶୁଣି ଗାଏନେକ୍ ତା' ସାଥୀକୁ ଡାକିଲା ବୀର ପରି, ଘୁଟର୍ ଘୁଁ, ଘୁଟର୍ ଘୁଁ କରି ତା' ସାଥୀକୁ ଅଭୟ ଦେବାକୁ ଲାଗିଲା। କହିବାକୁ ଲାଗିଲା ହୁଏତ ଶିବ, ପରମ ପ୍ରେମମୟ, ତାଙ୍କୁ ପ୍ରାର୍ଥନା କରିବା ଅପେକ୍ଷା ପ୍ରେମ କରିବା ବେଶି ଭଲ। ଏ' ପାଦ୍ରୀ ପ୍ରେମର ଅର୍ଥ ବୁଝେନା, ଭଲ ପାଇବାର ବ୍ୟାକରଣ ଜାଣେନା, କିନ୍ତୁ ଶବ୍ଦ, ମନ୍ତ୍ରର ଉଚ୍ଚାରଣ କରେ, କିନ୍ତୁ ସେଥିରେ ଜାନ୍ ଥାଏନା। ବେଜାନ୍ ବେଜାଏ ଶବ୍ଦ କ'ଣ ମନ୍ତ୍ର ହେଇପାରେ ଆଉ ସେଇ ମନ୍ତ୍ରପାଠ କ'ଣ ଦେବତାକୁ ଆକର୍ଷିତ କରିପାରେ ? ଏ ପାଦ୍ରୀର ପ୍ରାର୍ଥନା ବି ସେମିତି ଏପଟେ ପ୍ରାର୍ଥନା କରୁଥିବ ଆଖି ମୁଦି, ସେପଟେ ଆମକୁ ଦେଖୁଥିବ ଆମ ମାନସିକ ଆଉ ଦୈହିକ ମିଳନକୁ। ଭାବୁଥିବ ମନେମନେ ପ୍ରାର୍ଥନା ସରିବା ମାତ୍ରେ ମନ୍ଦିରର କୋଣରେ ଥିବା ଲମ୍ବା ଝାଡୁ ଧରି ଆମକୁ କେମିତି ଘଉଡ଼ିବ !

ଭକ୍ତମାନେ ସେତେବେଳକୁ ସବୁ ଆସିଥାନ୍ତି। ପଣ୍ଡିତଙ୍କ ପ୍ରାର୍ଥନା ଆଉ ବିଘ୍ନଘଟଉଥିବା ପାରାମାନଙ୍କର ପ୍ରେମ ତାଂକୁ ଆମୋଦିତ କରୁଥାଏ। ନା ସରୁଥାଏ ପାରାମାନଂକ ଘୁଟର୍ ଘୁଟମ୍, ନା ସରୁଥାଏ ପାଦ୍ରୀଙ୍କ ପ୍ରାର୍ଥନା। ଯେତିକି ଯେତିକି ଥର ପ୍ରାର୍ଥନା ଅଧାରୁ ଭାଙ୍ଗୁଥାଏ, ସେତିକି ଥର ସାଧୁଙ୍କ ମନରେ ରାଗ କୁହୁଳୁ ଥାଏ। ଆଜି ସେ ଏ' ପାରାମାନଂକୁ ପାନେ ଚଖେଇବେ ବୋଲି ଦୃଢ଼ ନିଶ୍ଚିତ ହେଉଥାନ୍ତି, ହେଲେ ଏ'ସବୁରେ ପ୍ରେମପକ୍ଷୀଙ୍କ ପ୍ରେମରେ ଏତିକି ଟିକେ ବି ଆଞ୍ଚ୍ ଆସୁ ନଥାଏ।

ଗାଏନେକ୍ ଏଥର ବୀରପରି ଘୁମ୍‌ରିବାକୁ ଲାଗିଲା ଠିକ୍ ଚିକ୍ବାର କଲାପରି। ମୁଣ୍ଡର ଚୂଳ ଦୋହଲିଲା, ସତେବା ଦୋହଲୁଚି ବର୍ଚ୍ଛା। ଅଙ୍ଗ ସଂକୁଚିତ, ପ୍ରସାରିତ ହେଉଚି ଘୁମ୍‌ରିବା ସ' ତାଳଦେଇ ଦେହ ଭିତରେ ସତେବା ଉତ୍ତେଜନା ଲହଡ଼ି ଭାଙ୍ଗୁଚି। ଘୁଟଘୁଁ ଘୁମରି ଡାକ ପକଉଚି ଗାଏନେକ୍ ତା'ର ସାଥୀକୁ ପାଖକୁ ଆସିବାପାଇଁ। ସିଲଭର୍‌ଟେଲ୍ ବି କମ୍ ନୁହେଁ, ମାଈ ପାରା ହେଲେ ବି କ'ଣ ହେଲା ବୁଦ୍ଧି ବହୁତ୍। ସୁଯୋଗ ଅପେକ୍ଷାରେ ଥାଏ, ବେଳେବେଳେ ଗାଏନେକ୍ ପାଖକୁ ଚାଲିଆସିବ।

ପଣ୍ଡିତ ପରମାନନ୍ଦ ଜାଣିଥିଲେ ଯେ, ଗାଏନେକ୍‌ର କାମ ବାସ୍‌ନା ତା' ପେଟ ପାଖରେ ରୁଦ୍ଧି ହେଇଯାଇଚି, ସେଇଯୋଗୁ ଯେ ଯେତେ ହୁରୁଡ଼େଇଲେବି ସେ ସେତେ ଜିଦ୍‌ରେ ତା' ସାଥୀକୁ ଡାକୁଛି। ଏହି ଭାବନା ହିଁ ତାଂକୁ ପ୍ରାର୍ଥନାରୁ ବିରତ କଲା। ପଣ୍ଡିତଙ୍କ ପେଟ ଭିତରେ ସାପପରି ଏ ସଂକ୍ରାମକ ବାଣୀ ସଂକୋଚିତ, ପ୍ରସାରିତ ହେବାକୁ ଲାଗିଲା। ଯେତେବେଳେ ସେ ଏକଥା ଭାବିବାକୁ ଲାଗିଲେ, ମନେମନେ ସେ ଭାବିବାକୁ ଲାଗିଲେ। ସବୁ ସଜୀବଙ୍କ ମନରେ କାମ ବାସନା ଘର କରିଥାଏ। ଯେତେ ଚେଷ୍ଟା କଲେବି ଚପେଇ ହୁଏନି ନିର୍ବାଣ ଅପେକ୍ଷା କାମନାର କୈଳାସ ଆଉ ବାସନାର ବୈକୁଣ୍ଠ ଭିତରେ ସେ ଆଉଗୋଟେ ସ୍ୱର୍ଗର ପରିକଳ୍ପନା କରେ। ସେ ମନେମନେ ମାନୁଥିଲେ ଯେ ଚିପାଦାନ୍ତ ଭିତରର ପ୍ରାର୍ଥନା ଭଲ ନଥିଲା, ପବିତ୍ର ନଥିଲା ଯଦିଓ ସେ ପ୍ରାର୍ଥନା କରିବାର ଛଳନା କରୁଥିଲେ। ତାଂକ ପ୍ରାର୍ଥନାର କିଛି ଶବ୍‌ଦର ଅର୍ଥ ସେ ନିଜେ ବୁଝିପାରୁନଥିଲେ ଏବଂ ତାଂକ ମନ ସବୁବେଳେ ତାଂକୁ ଏ' ମିଛ ପ୍ରାର୍ଥନାରୁ ବିରତ କରୁଥିଲା।

ପ୍ରାର୍ଥନା ଆଉ ପ୍ରେମ କଳ୍ପନା ପରିପୂରକ ହେଲେବି ଦୁଇଟିଯାକ ଭିନେ ଅନୁଭୂତି। ଦୁଇଟିଯାକ କେବଳ ଯେ କରିଥାଏ କହିପାରେ। ପ୍ରାର୍ଥନା କରୁଥିବା ଲୋକଟି ଲାଗେ, ସେ ଠିକ୍, ପ୍ରେମ କରୁଥିବା ଲୋକରବି ସେୟା କରେ। ପଣ୍ଡିତ ତ ରକ୍ତମାଂସର ତିଆରି ମଣିଷ। ସେ ଏହି ଭାବନାର ଦୂରକୁ ଯାଇଥାନ୍ତେ ବା କେମିତି ?

ଘୁଟରଘୁଁ, ଘୁଟରଘୁଁ ଭିତରେ ସିଲଭର୍‌ଟେଲ୍ ଘୁମ୍‌ରିଲା ବହୁ ସମୟ। ତା' ପ୍ରେମିକକୁ ଖୋଜିବାପରେ ତା' ଡ଼ୋଳା ବଡ଼ ବଡ଼ ହେଇଗଲା।

ଏବେ ଛାଇଯାଇଥିଲା ନୀରବତା, ଯୋଉ ନୀରବତା ସ୍ୱପ୍ନ ଭିତରେ ଶୂନ୍ୟତା ଆଣି ଦେଇଥିଲେ, ଥଣ୍ଡାପବନ୍ ଭିତରେ ଅତିମାନବୀୟ ବିକୀରଣ ପରି।

ପଣ୍ଡିତ୍ ପରମାନନ୍ଦ ଜାଣିଥିଲେ ଯେ, ସୂର୍ଯ୍ୟ ଉଚ୍ଚକୁ ଉଠୁଚନ୍ତି କିନ୍ତୁ ଏଯାଏଁ ସେ ତାଂକ ପୂଜାକର୍ମ ସାରିପାରିଲେ ନାଇଂ। ସେହି ସମୟରେ ଗୋଟେ ପବନ୍‌ର ଦଲ୍‌କା ପଶି ଆସିଲା ଫ୍ଲାପ୍‌ଫ୍ଲାପ୍ ଶବ୍‌ଦ କରି। ସାଧୁ·ଦେଖିଲେ ଏ' ଗାଏନେକ୍‌ର ଭଉଣୀ 'ହୋର୍‌ଫେସ୍' ସେ ଚକ୍‌ର କାଟି ଉଡୁଥାଏ।

ପାରାମାନେ ଆଜି ଆଉ ଜଣ ଗୋଟେ ମସୁଧା ଚଳେଇଚନ୍ତି। ସତେବା ଗୋଟେ ନିର୍ଦ୍ଦିଷ୍ଟ ପ୍ଲାନ୍ ଅନୁଯାୟୀ କାମ କରୁଚନ୍ତି, ଯେମିତିକି ସେମାନେ ପରମାନନ୍ଦଙ୍କୁ ପ୍ରାର୍ଥନା, ପୂଜାକର୍ମ କରାଇ ନଦେବାକୁ ବଦ୍ଧ ପରିକର।

ପ୍ରାର୍ଥନାର ଶବ୍‌ଦ ସବୁକୁ ଜିଭ ତଳେ ଚାପି ଓଠ ପାଖକୁ ଆସ୍ତେ ଖସ୍‌ରେଇ ଆଣିଲେ ପଣ୍ଡିତେ। ତଥାପି ପାରିଲେନି, ପଣ୍ଡିତେ ଏଥର ବାହାରକୁ ଧାଇଁଲେ, ଯୋଉଠୁ ଶବ୍‌ଦ ଆସୁଥିଲା। ଦୁର୍ନୀତିର ଦୂତଗୁଡ଼ାଙ୍କୁ ଏଇଠୁ ଭଗେଇବାକୁ ହବ। ସେମାନେ ଯେ କେବଳ ମନ୍ଦିର ପରିବେଶକୁ ଗନ୍ଧା କରୁଚନ୍ତି ତା' ନୁହଁ, ବରଂ ପ୍ରାର୍ଥନା କରାଇ ଦଉନାହାନ୍ତି ଶାନ୍ତିରେ, ସେଇମିତି ଖୁମ୍ପାଖୁମ୍ପି ହଉଚନ୍ତି, ଚଢାଚଢି, ଆକୁତି ମିନତି ହଉଚନ୍ତି ଏବଂ ସହବାସରେ ଲାଗିପଡ଼ିଚନ୍ତି। ଚିନ୍ତା କରୁନାହାନ୍ତି ଯେ ଏ' ମନ୍ଦିର, ପବିତ୍ର ସ୍ଥାନ। ବେହିଆ ପରି ସେମାନଙ୍କ ପାଶବିକ ପ୍ରବୃତ୍ତି ଚରିତାର୍ଥ କରୁଚନ୍ତି। ବାଧହୋଇ ପଣ୍ଡିତଙ୍କ ଜିଭ ଏମାନଂକୁ ଅଭିଶାପ ଦେଉଚି ଏ' ରାକ୍ଷସ ମାଂନକୁ।

ଗାଏନେକ୍‌ର ଭଉଣୀ ତା'କାମରେ ସଫଳ ହେଉଥିଲା। ଗାଏନେକ୍ ଧୀରଭାବେ ପର ଫଂଡ୍‌ଫଡ଼ଉ ଥିଲା ଯେତେବେଳେ ପଣ୍ଡିତ ପଛରୁ ଆସୁଥିଲେ ସେତେବେଳେ ଗାଏନେକ୍ ପ୍ରଥମେ ଦୁଆର ଉପରେ ବସିଲା, ତା'ପରେ ଦି'ଦମ୍ ଉଡ଼ିଲା। କାପୁରୁଷ ପ୍ରରି ବସି ନ ରହିବା ପାଇଁ ସେ ମନେମନେ ଚିନ୍ତାକଲା। ସିଲ୍‌ଭର୍‌ଟେଲ୍‌କୁ ତଳେ ଠିଆ ପାଦ୍ରୀ ହାବୁଡ଼ରୁ ବଞ୍ଚେଇବାକୁ ତା'ଭିତରେ ଏକ ଉତ୍ସାହ ଉଠି ଆସୁଥିଲା।

ସେ ଡାକିଲା, 'ଗୋ' ପ୍ରିୟତମା, କଅଁଳ ପର ଓଢ଼। ଅନୁପମା। ସିଲଭର୍‌ଟେଲ୍ ତା'ପର ଫଂଡ଼୍‌ଫଡ଼୍‌ଇବାକୁ ଲାଗିଲା ମାସୁସ, ବାସ୍ନାମୟ, ପ୍ରିୟତମ, ଉଷ୍ଣମ୍ ପୁରୁଷପଣରେ ରତୁମୟ, କହିଲା ସିଲଭରଟେଲ୍। ଗାଏନେକ୍‌ର ପ୍ରଣୟ ଗ୍ରହଣ ପୂର୍ବରୁ, ପରସ୍ପର ପ୍ରେମ ସମ୍ଭାଷଣରେ ଉଭୟେ ଖେଳିଯାଇଥିଲେ, ଯେମିତିକି ଆଜି ଆକାଶ ପୃଥିବୀ ଏକକାର। ସେ ମିଳନରେ ଆବିଳତା ନାଇଁ। ସେଠି ସରଳତାର ତରଳତାର ନମନୀୟତାର ଅନ୍ତ ନାଇଁ। ଆକାଶ ବୁଝୁଛି ପୃଥିବୀ କଥା, ପୃଥିବୀ ବି ସେମିତି ଉତ୍ତର ଫେରାଉଚି। କେହିବି ବିଘ୍ନ ସୃଷ୍ଟି କରିପାରିନାହାନ୍ତି ସେଇ ପ୍ରେମ ଭିତରେ।

ପୂଜକ ପରମାନନ୍ଦ ବି ଦିନେ କମ୍ ପ୍ରେମିକ ନଥିଲେ ମନେ ଅଛି ତାଂକ ପିଲାଦିନର କଥା ଗୁଡ଼ାକ। ଅଳକା ଓ ଶର୍ମିଷ୍ଠା ଦୁଇ ଝିଅଙ୍କର କଥା। ସଂସ୍କୃତ ଶ୍ଳୋକ,

ସେ ବଡ଼ ଉଦାତ୍ତ ଆଉ ଉଦାର ଭାବେ ଆବୃତ୍ତି କରନ୍ତି ବୋଲି ସ୍କୁଲଟା ସାରା ଏକପ୍ରକାର ନାଁ ହେଇଯାଇଥାଏ। ଶର୍ମିଷ୍ଠା କୁ ହସିଦେଇ କହେ। କିରେ, ପରୁ, ତୁ'ତ କେଡ଼େ ବାଗରେ ଗୀତଗୋବିନ୍ଦ ଗାଉଚୁ, ଯେମିତି କୋଣାର୍କ ଦେଖିବା ପରି ଲାଗୁଚି। ପରମାନନ୍ଦ ବି ଖୁସିରେ ଫାଟିପଡ଼ନ୍ତି। ଶର୍ମିଷ୍ଠା ଟିକିଏ ମୋଟୀ। ଟଣାଟଣା ଆଖି, ସବୁବେଳେ କଜଳରେ ଜୁଡୁବୁଡୁ, ସେ ହସିଲେ ଯେତିକି ଭଲଲାଗେ, ରଷିଲେ ତା'ଠୁ ବେଶି, ଚାଲିଲେ ପଦ୍ମକଢ଼ି ଫୁଟେ, କୁନିକୁନି ଛାତି, ପତଳି କମର, କୁନି ଅଥଚ ଭାରି ନିଦା ନିତମ୍ବ, ଦୋହଲେଇ ଦୋହଲେଇ ଚାଲିଲେ କୋଉ ପୁରୁଷ ଦଣ୍ଡେ ଚାହିଁନଦବ ଆଉ ଅଳକା, ଚାହିଁଥିବ ଜଳକା, ଯେମିତି ପୁରୁଷ କେବେ ଦେଖିନି, ଭାରି ଚଣ୍ଡୀ ସେ, ଏଇ ସିଲଭର୍ ଟେଲ୍ ପରି, ଭାରି ଜିଦ୍‌ଖୋର୍ ଝିଅ। କେତେ କଜିଆ ସେ ନଲଗେଇଚି, ଶର୍ମିଷ୍ଠା ସହ, 'ତୁ' କାହିଁକି ପରୁ ସ' କଥା ହଉଚୁ ସେ ତୋ'ର 'କଣ' ଲାଗେ, ସେ ଭଲ ସଂସ୍କୃତ ଶ୍ଳୋକ ବୋଲିଲା, ତୋ'ର କଣ ଗଲା, ସେ କେବଳ ମୋ'ର, ତା' ବାପା ମୋ'ବାପା ରାଣ ଖାଇଥିଲେ, ବାଣେଶ୍ୱର ମନ୍ଦିରରେ ଦିହେଁ ଦିଇଜଣଙ୍କର ବୋଲି, ଏ' ପରୁଟା ସିନା କୋଉଟା କିଛି ଜାଣିପାରେନି ଆମ ଟୋଲ୍‌ର ସଂସ୍କୃତ ମାଷ୍ଟ୍ରପରି, ଯେ ଆହାଁଲମ୍ବ ବେତ ଧରିଥାଏ, ବେତଟି ଏମିତି ଲମ୍ବା ଯେ ଘରର ଶେଷମୁଣ୍ଡ ଯାଏଁ ପାଉଥାଏ। ଏ' ପରମାନନ୍ଦ ଠିକ୍ ସେମିତି। ତା'କୁ ଜଣାନାହିଁ ଯେ ପୁରୁଷ କ'ଣ ? (ପୁରୁଷ ଯେ ପ୍ରକୃତିର ପରିପୂରକ ପୁରୁଷକୁ ଛାଡ଼ି ଶକ୍ତିର ସ୍ଥାନ ନାହିଁ ଶକ୍ତିକୁ ଛାଡ଼ି ପୁରୁଷର ପୁରୁଷତ୍ୱ ମୂଲ୍ୟହୀନ, ଏ' ବୋକା ଟୋକାଟା କ'ଣ ବୁଝେ।

ଏଇ ପରମାନନ୍ଦ ସବୁ ବୁଝେ। କିଛି ନବୁଝିବାପରି ତା'ମନରେ ସବୁବେଳେ ଗୋଟେ ପାପବୋଧ, ସେ ଝିଅମାନଙ୍କ ସହ କଥା ହେବାକୁ ଡରେ ଆଉ ଲାଜାଏ, ଅଳକା ବେଳେବେଳେ ତା'ର ପଛରୁ ଭିଡ଼ି ପକାଏ। ପରମାନନ୍ଦ ଲାଜରେ ପାଣି ପାଣି ହେଇଯାଏ। 'କେଡେ ଅଲାଜୁକ ଝିଅଟା ମ', ପୁଅ ପିଲାଟାକୁ ପୁଛରୁ ଜାକି ଧରୁଛି ତା' ଛାତି ପରମାନନ୍ଦର ପିଠିରେ ଲଦିଦେବାବେଳେ, ପରମାନନ୍ଦ କୁତ୍ କୁତେଇଯାଏ, ପରମା ଭାବେ ଅଳକା ନାଁ ଅଳକା ନହେଇ ପରମା' ବା 'ଆଦ୍ୟା' ହେଇଥିଲେ ଭଲହେଇଥାନ୍ତା, ଟିକେ ମୋଟୀ ଏଇ ଝିଅଟା ଯେ କୌଣସି ପୁଅଙ୍କୁ ପାଗଳ କରିଦେବାକୁ ସକ୍ଷମ। ଉତ୍ତୁଙ୍ଗ ବକ୍ଷ, ଭାରି ନିତମ୍ବ, ଗଭୀର ନାଭି, ତୋଫା ତନୁ, ଟଣାଟିଆ ଆଖି, କୁଞ୍ଚିତକେଶ, ଭଗବାନ୍ କେମିତି ଗଢ଼ନ୍ତି ନାରୀକୁ କେଜାଣି, ଭାବେ ପରମାନନ୍ଦ। ଯୋଉ ଭଗବାନ୍ ଗଢିଛି ନାରୀକୁ ସେବି ବଞ୍ଚିପାରେନା ତା' କବଳରୁ ତା' ପ୍ରେମରେ ପଡ଼ିବା ପାଇଁ ବାଧ ହୁଏ। ପରମା ଗୁଣୁଗୁଣାଏ 'ମନ ଭିତରେ ପାପ ବୋଧ ଆସୁଚି, କାମନା ଜର୍ଜରିତ ହେଇପଡୁଚି କି ସେ, ବିଷ୍ଣୁ ବିଷ୍ଣୁ କହି ପ୍ରକୃତିସ୍ଥ ହୁଏ।

ପ୍ରଥମେ କିଛିଦିନ ସଂସ୍କୃତ ପଣ୍ଡିତ ଥିବା ପରମାନନ୍ଦର ମନ ଭିତରେ ଅଳକା ଓ ଶର୍ମିଷ୍ଠା ଏବେବି ରହିଚନ୍ତି। ସେ, ସେ ଦୁଇଜଣନାରୀକୁ ଭୁଲିପାରିନାହାନ୍ତି। ଆଜି

ଅଳକା, ଶର୍ମିଷ୍ଠା, କିଏ କେଉଁଠାରେ, ସଂସ୍କୃତ ଟୋଲ୍‌ର ପାଠ ପଢ଼ା ପରେ ତା' ବାପାଙ୍କ ବଦଳି ଯୋଗୁ ସେମାନେ କୁଆଡ଼େ ଚାଲିଗଲେ, କାହିଁ ଥରୁଟେ ତ ମନେପକେଇଲେନି ପରମାଙ୍କୁ। ନାରୀମାନେ ଏମିତି ଦଗାଦିଆ, ସେମାନଙ୍କ ପ୍ରେମ ବି ସେମିତି କ୍ଷଣିକ। ସେଥିରେ ପଡ଼ିଲେ ଜୀବନଯାକ ଖାଲି ପତଙ୍ଗ ନିଆଁରେ ପଡ଼ି ମରିବା ପରି, ନଷ୍ଟ ହେବା ସାର ହୁଏ। ସବୁଜାଣିବି କଲେଇପୋକ ପିରତୀକରେ, ଆଲୁଅ ସାଥେ, ବର୍ଷା ରାତିରେ ଆଉ ସକାଳ ହେବା ବେଳକୁ ମରେ। ପ୍ରେମ ହିଁ ଏମିତି ଏପରି ଏକ ବାଟଲତା ବେଳେବେଳେ ପ୍ରେମ ପାଇଁ ଜୀବନ୍ ଦେବାକୁ ହୁଏ।

ପ୍ରେମିକ ବୁଝେନା। ବେଳେବେଳେ ବୁଝିବି ବୁଝେନା ଶେଷରେ ପାଗଳ ହୁଏ ଏଇ ଗାଏନେକ୍ ଭଳି। ମରିବାବେଳେ ଏ ସମାଜ ତା' ପିଠିରେ ପଡ଼େ ନାହିଁ। ଗାଏନେକ୍ ତ ପାରାଟିଏ, ସମାଜର ଏ' ନିଷ୍ଠୁର ସତ୍ୟକୁ ଜଗିପାରନ୍ତା କେମିତି ?

ସଂସ୍କୃତ ଟୋଲ୍‌ର ଶିକ୍ଷକ ଥିବାବେଳେ ଗୁରୁ ପରମାନନ୍ଦ କମ୍ ପ୍ରେମିକ ନଥିଲେ। କାଳିଦାସଙ୍କ ରଚନା ସବୁ ପଢ଼ାଇବା ବେଳେ ସେ କ'ଣ ବୋଲି କ'ଣ ହେଇ ଯାଉଥିଲେ। 'ଶକୁନ୍ତଳା' ବୋଲି ଗୋଟେ ସୁନ୍ଦରୀ ଛାତ୍ରୀ ତାଂକ ପାଖରେ ପଢୁଥିଲା ସାକ୍ଷାତ୍ ଯେମିତି ଦେବୀ ପ୍ରତିମା। ଗୋରୀ ଯେମିତି ସେମିତି ତା' ଯୌବନ ଷୋଡ଼ଶୀ ଶକୁନ୍ତଳାକୁ ଯୋଉଦିନ ପରମାନନ୍ଦ ଛାତିରେ ଭିଡ଼ି ଧରିଲେ, ସେ ଲାଜେଇଗଲା 'ମୁଁ ଗୁରୁଜୀ' ଏଇ ଭାବନା ପୁଣି ତାଙ୍କୁ ଦୂରେଇ ଦେଲା। 'ବିଷ୍ଣୁ ବିଷ୍ଣୁ' କହି ସେ ପ୍ରକୃତିସ୍ଥ ହେଲେ।

ଏବେ, ଶକୁନ୍ତଳା କୁଆଡ଼େ ଚାଲିଯାଇଚି କେଜାଣି ? ଯୋଉଦିନ ସେ, ଟୋଲ୍‌ରୁ ଗଲା ସେଦିନ ତା'ର କି କାନ୍ଦ, କହୁନ। ପରମାନନ୍ଦଙ୍କ ଧଳା କମିଜ୍ ଲୁହରେ ତିନ୍ତି ଯାଇଥିଲା ଏବେ ତୀର ସୁଜନପୁର ଶିବରାତ୍ରୀ ଯାତ୍ରାରେ ହଠାତ୍ ଦେଖାହେଲା ଶକୁନ୍ତଳା ସହ। ଗୋଡ଼ ଛୁଇଁ ପ୍ରଣାମ୍ କଲା ସେ। ସାଙ୍ଗ ଉର୍ମିଳାକୁ କହିଲା, ସାର୍ ମୋତେ କେତେ ଭଲପାନ୍ତି ଜାଣୁ, ଉର୍ମିଳା କହିଲା ହସି ହସି କେତେ ? ପଣ୍ଡିତ ପରମାନନ୍ଦ ଉପରେ ଉପରେ ହସିଲେବି ଭିତରେ ଭିତରେ ମରିଯାଉଥିଲେ।

ଏହି ପରମାନନ୍ଦ ଆଗେ ଥିଲେ ସଂସ୍କୃତ ସାହିତ୍ୟର ପୂଜକ। ତା' ଭିତରେ ଥିଲେ ପ୍ରେମର ପୂଜକ। ଏବେ ମନ୍ଦିରର ପୂଜକ। ହେଲେ ପ୍ରେମର ପୂଜକଥିବା ଏକଦା ପରମାନନ୍ଦ ସହିପାରୁନି ଆଜି ଗାଏନେକ୍ ଓ ସିଲ୍‌ଭର୍‌ଟେଲ୍‌ର ପ୍ରେମ।

ସାଇଁ ସାଇଁ କରି କିଏ ଗୋଟେ ଡେଣା ଫଡ଼୍‌ଫଡ଼୍ କରି ଯାଇ ବାକ୍ସ ଉପରେ ବସିଲା। ଓଃ ଏ' 'ହୋର୍‌ଫେସ୍', ଗାଏନେକ୍‌ର ଭଉଣୀ। ସେ ତରଂଗ ତରଂଗ ଚାହିଁ ତା' ଭାଇ ଆଉ ଭାଉଜଙ୍କୁ ସଂଗମକୁ ଦେଖୁଥାଏ ଓ ବାହାର ଆଡୁ ଆସିବାକୁ ଥିବା ଆକ୍ରମଣକୁ ପ୍ରତିହତ କରିବା ପାଇଁ ମନେ ମନେ ପ୍ରସ୍ତୁତ ହେଉଥାଏ। ସାଇଁକରି ପୁଣ

ପଣ୍ଡିତଙ୍କ ପାଖ ଦେଇ ଉଡ଼ିଗଲା । ହୋର୍‌ଫେସ୍ । ସତେବା ଶାଗୁଣା ପରି ଖୁମ୍ପିଦବ ଆଶ୍ଚର୍ଯ୍ୟ ହେଉଥିଲେ ପଣ୍ଡିତ ପରମାନନ୍ଦ ହୋର୍‌ଫେସ୍ ତା' କର୍ତ୍ତବ୍ୟ କରୁଥାଏ । ସାଏଁ ସାଏଁ କରି ଚକ୍‌କର୍ କାଟି ଉଡୁଥାଏ । ଥରେ ଚାହୁଁଥାଏ ତା' ଭାଇ ଗାଏନେକ୍‌କୁ, ଥରେ ତା', ଭାଉଜ ସିଲଭର୍‌ଟେଲ୍‌କୁ । ପ୍ରେମ ବିହ୍ୱଳିତ ସିଲ୍‌ଭର୍‌ଟେଲ୍ ସେତେବେଳେ ଯେମିତି ଦିଶୁଥାଏନା, ତା'ର ବର୍ଣ୍ଣନା କୌଣସି କାହାଣୀ ବା କବିତାରେ ଅସମ୍ଭବ । ଗୋଟେ ଖାଣ୍ଟି ରୂପାରେ ତିଆରି ପାରାବତଟିଏ କାହିଁକି ସମଗ୍ର ପୁରୁଷ ଜାତିକୁ ହଲେଇପାରିବାପରି କ୍ଷମତା ରଖିଛି । ସିଲ୍‌ଭର୍‌ଟେଲ୍‌ର ଲାଞ୍ଜ ଯେମିତି ଗୋଟେ ଆଣ୍ଟେନା । ସେ ସେଥିରେ ଆଗ, ପଛ, କଡ଼, ଅଧଃ, ଊର୍ଦ୍ଧ୍ୱ, ଦଶଦିଗ, ଚଉଦ ଭୁବନର ଖବର ଜାଣିପାରେ । ହେଲେ ସିଲ୍‌ଭର୍‌ଟେଲ୍‌ର ଖବର ସଂଗ୍ରହ କରିବା ଗୁଣ ଅପେକ୍ଷା, ଖବର ଚାପି ରଖିବା ଗୁଣଟି ଲୋଭନୀୟ । ସେ ମନ୍ଦିରର ଯେକୌଣସି ଜାଗାରେ ବସି ଲାଞ୍ଜ ଟେକି ବେକ ଫୁଲାଏ । ସତେ ଯେମିତି ସବୁଯାକ ମନର କଥା ଏଇ ଗଳାରେ ହିଁ ରୁନ୍ଧି ହେଇ ରହିଥାଏ । ଘୁଟର୍ ଘୁଁ ଘୁଟର୍ ଘୁଁ କରି ସେ ଯେତେବେଳେ ଘୁମ୍‌ରେ, ଚାରିଆଡ଼େ ଖବର ଖେଳିଯାଏ । ସବୁଆଡ଼େ ଖେଳିଯାଏ ଗୋଟେ ବସନ୍ତର ବାସ୍ନା । ପ୍ରେମାୟିତ ସଂକଳ୍ପ ଏକ ନେଇ ସିଲ୍‌ଭର୍‌ଟେଲ୍ ଯେତେବେଳେ ସ୍କାଇଲାଇଟ୍ କୁ ଅନାଏଁ । ଗାଏନେକ୍ ସେତେବେଳେ ନଥାଏ । କ'ଣ ହୁଏ କେଜାଣି ଦଲ୍‌କାଏ ପବନ୍ ପରି ପଶି ଆସେ । ବାସ୍ତୁହରା, ବୁଲା, ବାଆଁରା ପକ୍ଷୀ ପରି । ତୀର ପରି ଚାଲିଆସି ସିଲ୍‌ଭର୍‌ଟେଲ୍‌ର ଲାଞ୍ଜକୁ କାମୁଡ଼ି ଦିଏ । ଓଃ କରି ଅନେଇଁ ହସିଦିଏ ସିଲ୍‌ଭର୍‌ଟେଲ୍ । ସେଇଠୁ ଆରମ୍ଭ ହୁଏ ପ୍ରେମାଳାପ ।

ବେଳେବେଳେ ଏତେ କଳି ଲାଗନ୍ତି ଏମାନେ, ରକ୍ଷାରକ୍ଷି, କଳି ଝଗଡ଼ା, ମାର୍‌ପିଟ୍ ଏ'ସବୁ ହୁଅନ୍ତି । ହୋର୍‌ଫେସ୍, ଭଲ ମାଇପାରାଟିଏ । ଏ' ଦି ଜଣଙ୍କୁ ବୁଝାଏ । ସେମାନେ କଳି ଲାଗିଲେ ତାଙ୍କ ଛୋଟ ସଂସାରର ଅବସ୍ଥା କ'ଣ ହେବ ବୋଲି ଚେତାବନୀ ଦିଏ ।

ଗୋଟେ ପକ୍ଷୀର ଶତୃ ସଭିଏଁ । ସାଧାରଣ ସାପ, ବଣଭୁଆଠୁ ଆରମ୍ଭ କରି ଚିଲ, ଛଞ୍ଚାଣ, ମଣିଷ ପର୍ଯ୍ୟନ୍ତ ପକ୍ଷୀ ନିଜେ ନିଜର ବ୍ୟାକରଣ ଜାଣେ । ସେ ନିଜେ ନିଜର ଅବ୍ୟୟୀ ଭାବରେ ଦିଲ୍ ଖୁସ୍ ରହେ, ନିଜର ବିଶେଷ୍ୟ ସେ, ବିଶେଷଣ ବି ସେ, ଗୋଟେ ନିରୀହ ଜିଇଁବା ପଣ ପକ୍ଷୀର ବିଶେଷତ୍ୱ, ସହନଶୀଳତାର ବହୁବ୍ରୀହି ସେ । ପକ୍ଷୀ, ପ୍ରକୃତରେ ସୌନ୍ଦର୍ଯ୍ୟର ଏକ ହିସ୍‌ସା, ପକ୍ଷୀ ହେବାପାଇଁ ସେଥିପାଇଁ ମଣିଷ ବି ସ୍ୱପ୍ନ ଦେଖେ । ପକ୍ଷୀ, ପ୍ରାଣପକ୍ଷୀପରି ଗୋଟେ ନିଜର ନିଜର ଆତ୍ମୀୟ ଆତ୍ମୀୟ ଲାଗେ ।

ପକ୍ଷୀର ଶତୃପରି ପ୍ରେମର ଶତୃ ସଭିଏଁ । ବେଳେବେଳେ ଏ ସମାଜ ପ୍ରେମିକ-ପ୍ରେମିକାକୁ ଏମିତି ହିଂସା କରେ ଯେ ସେମାନେ ମରନ୍ତି ତଥାପି ବଞ୍ଚିଥିବାଯାଏଁ ପ୍ରେମ ହିଁ କରନ୍ତି । ସମାଜରେ ପ୍ରେମିକୁ ଏକ ଦୈହିକ ଆବେଦନ ବୋଲି ଧରାଯାଏ । ଏ କଥା

ଏମିତି ପ୍ରାଣୀ ମନରେ ଥାଏ। ତା' ମନକୁ ସବୁବେଳେ ଗୋଟେ ପାପବୋଧ ଗ୍ରାସ କରେ ଓ କରୁଥାଏ। ସେ ନିଜ ମନକୁ ବୁଝାଏ। ପ୍ରେମ, ପାପ ନୁହେଁ, ପ୍ରେମ ହିଁ ଈଶ୍ୱର। ତଥାପି ପୁରୁଣାକାଳିଆ ଚଳଣି, ପ୍ରେମ ପ୍ରତି ସମାଜର ରକ୍ଷଣଶୀଳ ବ୍ୟବହାର ପ୍ରେମପକ୍ଷୀଙ୍କୁ ଭଲରେ ବଞ୍ଚେଇ ବି ମାରିଦିଏନି। ବରଂ ଡହଳ ବିକଳ କରୁଥାଏ।

ମଲାପରେ ପ୍ରେମପକ୍ଷୀଙ୍କ ବିଷୟରେ କେହି କେହି କୁହାକୁହି ହୁଅନ୍ତି। ଲେଖାଯାଏ ଗପ ଓ କବିତା ଅସଂଖ୍ୟ, ଅଜସ୍ର, ହେଲେ ପ୍ରେମପକ୍ଷୀ ଆଉ ନଥାଏ। କିଛି ଅଳ୍ପ ଦିନର ଗନ୍ଧ ଛାଡ଼ି ଚାଲି ଯାଇଥାଏ। ଏ' ସମାଜ ସେମାନଙ୍କୁ ମନେରଖେ, ଭୁଲେନା। ହେଲେ, ପ୍ରୀତିର ଉପନିଷଦ୍, ପ୍ରେମର ନମାଜ୍ କେବେ ପଢ଼େନା।

ପଣ୍ଡିତ ପରମାନନ୍ଦ ଜାଣନ୍ତି, ତାଙ୍କ ଛାତି ପଥରରେ ତିଆରି ନୁହେଁ, ରକ୍ତ, ମାଂସରେ ତିଆରି। ସେ ବୁଝନ୍ତି ହୃଦୟ କ'ଣ, ମନ କ'ଣ, ପ୍ରେମ କ'ଣ, ଜୀବନର ମାନେ କ'ଣ? ତାଙ୍କ ମନ ବି ଚାହେଁ। ପ୍ରେମ ପରି ଗୋଟେ ମାସୁମ୍ ଜିନିଷକୁ ହାତକୁ ନେବାକୁ। ବାହାରର କଠିନ ଆବରଣ କିନ୍ତୁ ତାଙ୍କୁ ତା' କରେଇ ଦିଏନି। ସେ ଶିହରି ଉଠନ୍ତି। ତାଙ୍କର ବିଚିତ୍ର ଅବବୋଧ ତାଙ୍କୁ ପଙ୍ଗୁ ସ୍ଥାଣୁ ସଜେଇଦିଏ। ସେ ଯେମିତି ଛୋଟ ପିଲାଦିନୁ ଜେଜେବାପାଟିଏ ହେଇ ଜନ୍ମ ନେଇଚନ୍ତି। ଜନ୍ମରୁ ଖାଲି ଉପଦେଶ ଦେବେ ବୋଲି କସମ୍ ଖାଇଚନ୍ତି। ପ୍ରେମ, ସ୍ନେହ, ଏସବୁ କିଛି ଚିଜ ସେ ଯେମିତି କିଛି ଜାଣନ୍ତି ନାଇଁ।

ବେଳେବେଳେ ବିଧବା ଦ୍ୱିପ୍ରହରରେ ବା ଅଧରାତିରେ ପରମାନନ୍ଦଙ୍କ ନିଦ ଭାଙ୍ଗିଯାଏ। କେଜାଣି କାହିଁକି ଏଇ କେତେଦିନ ତାଙ୍କୁ ଭଲ ନିଦ ହଉନାହିଁ। ଜ୍ୱର, ଥଣ୍ଡା, ଅବା ତାଙ୍କ ମେରୁଦଣ୍ଡ ଥରେଇ ଦେଉଚି। ଏଇମିତି ମନ୍ତ୍ର ଗାଇ ଗାଇ, ଠାକୁରଙ୍କ ସେବା କରି କରି ଜୀବନଟା କଟିଗଲା କିଛି ଗୋଟେ ହୃଦୟ ଭିତରେ ଖାଲି ଜାଗା ଏବେବି ଅଛି ବୋଲି ଲାଗେ। ଏବେବି ସେଇଠି କେମିତି କେମିତି କଣ ହେଇଯାଏ ଏଇ ପାରାମାନଙ୍କର ପ୍ରେମ ଦେଖି ପ୍ରଥମେ ଖୁସି ହୁଅନ୍ତି, ପରେ ରାଗି ବାଡ଼ିଧରି ଗୋଡ଼ାନ୍ତି। କହନ୍ତି, ନର୍କର ଦୂତଗୁଡ଼ାକ ମନ୍ଦିର ଆଉ ବେଡ୍‌ରୁମ୍ ଭିତରେ ଫରକ୍ ଜାଣନ୍ତିନି।

ପଣ୍ଡିତେ ଦେଖନ୍ତି, ଅଦୂରର କୋଠାରେ ସେଇ ପଚିଶ୍ ତିରିଶ୍ ବର୍ଷର ଧଳା-କଳା ମିଶା ଶାଢ଼ୀ ପିନ୍ଧା ଝିଅଟି, ଠିକ୍ ଏଇ ସିଲଭର୍‌ଟେଲ୍ ପରି। ସେ ଅରୁଆ ଚାଉଳ, କେତେବେଳେ ଖୁଦ, କେତେବେଳେ ମୁଢ଼ି, ପାରାମାନଙ୍କ ପାଇଁ ବୁଣିଦିଏ। କୁଆଡ଼େଥାନ୍ତି ପାରାମାନେ ଉଡ଼ିଆସନ୍ତି ତୀର ପରି ଓ ସେସବୁ ସାଉଁଟି ନିଅନ୍ତି। ଖୁସି ମନରେ ଝିଅଟି ଅନେଇଁଥାଏ ଆକାଶ୍ ଆଡ଼େ। ତା' କାନି ଉଡୁଥାଏ ଯେମିତି ଗୋଟେ ପ୍ରେମର ପତାକା, ଶାନ୍ତି, ମୈତ୍ରୀ, ସ୍ୱସ୍ତିର ପ୍ରତୀକ। ଆଖି ତା'ର ଯେମିତି କହୁଥାଏ, ବହୁଦିନୁ ହଜେଇ ଦେଇଥିବା ପ୍ରେମର ଇତିକଥା।

କାହିଁକି ସେ ଖୁଦ ଦେଇ ପରାମାନଙ୍କୁ ଡାକେ, ଏମାନେ ପରା ପ୍ରୀତିର ପ୍ରତୀକ। ପୀରତିର ଚିଠି ବାହକ। କୋଉ କାଳରୁ ଏମାନେ ପ୍ରେମିକ, ପ୍ରେମିକଙ୍କୁ ସାହାଯ୍ୟ କରି ଆସିଚନ୍ତି। କବୁତର୍ ଯା' କହି କେହି ପଠାଏ ଖବର୍, ପୁଣି କବୁତର୍ ଆ' ଆ' କହି, କେହି ସାଉଁଟିନିଏ ଚିଠି। ଆଜି ଏମିତି ପକ୍ଷୀଙ୍କୁ ପରମାନନ୍ଦ ଘଉଡ଼ି ଦେବାକୁ ବାହାରିଚନ୍ତି।

ମନ୍ଦିରରୁ ଅନତିଦୂରରେ ଗାଁ ପୋଖରୀ। ବର୍ଷା ଛାଡ଼ିଯାଇଚି। ତଥାପି ଗଲା ରାତି ପ୍ରବଳ ବର୍ଷା। ସେଥିରେ କେତେବେଳେ ବିଜୁଳି ଆଉ ଘଡ଼ଘଡ଼ି। ପଣ୍ଡିତଙ୍କ ମନରେ ରାତି ସାରା ଗରମ୍, ମଶା ଆଉ ଶୃଙ୍ଖଳା ଜୀବନକୁ ନେଇ ବିରକ୍ତି। ସବୁଦିନ ସେଇ ନରମ୍ ସକାଳରେ ତାଙ୍କ ମନ ଖୁସି ହୁଏ ! ସେଇ ଗୋଟେ, ପାତଳୀ ଝିଅଟି ଯେତେବେଳେ ଅଗଣାକୁ ଆସେ ପାରାକୁ ଖୁଦ ଦିଏ, ସେତେବେଳେ ସେ ଅନେଇଁ ରହନ୍ତି। ଦୈବାତ୍ ଯଦି ଝିଅଟିର ଦୃଷ୍ଟି ପଣ୍ଡିତଙ୍କ ଆଡ଼କୁ ପଡ଼େ, ସେ ଲାଜେଇ ଯାଏ, ଥରେକିନା ଜୁହାର୍ଟେ ପକେଇ ତା' ମୁଦୁସୁଲି ଚାଲିରେ ପଣ୍ଡିତଙ୍କ ଛାତିକୁ କୁତୁକୁତୁ କରିପକାଏ। ପରମାନନ୍ଦ ଭାବନ୍ତି, ଇଏ କିଏ ? ହେମ ହରିଣୀ ? ବନେ ଧାବନ୍ତେ ସୁନ୍ଦର ଧରଣୀ ? ହଳଦୀ ବସନ୍ତ ? ହଳଦୀ ରଂଗର ଝିଅ ? ପ୍ରେମ ବିଦ୍ଧ ଗୋଲାପ ? କିଏ ? ଯୋଉ ପରମାନନ୍ଦ, ଗାଏନେକ୍, ସିଲ୍‌ଭର୍‌ଟେଲ୍‌କୁ ପାପପକ୍ଷୀ ବୋଲି ମନ୍ଦିରରୁ ତଡ଼ି ଦେଉଥିଲେ, ଆଜି ତାଙ୍କ ମନରେ କ'ଣ ଅଛି ?

ପଣ୍ଡିତେ ଗାଧୋଇ ବାହାରିଲେ। ବାଟରେ ଗଲାବେଳେ ଆଜି ତାଙ୍କୁ କେମିତି ସବୁକିଛି ନୂଆନୂଆ ଲାଗୁଥାଏ। ବିଲ, ପ୍ରାନ୍ତର, ପୋଖରୀ, ଫୁଲ, ବଗିଚା, ମୃଦୁ୍ୟ ପବନ, କାଦୁଆ ନାଲି ଗାଁ-ବାଟ, ହଂସ ବତକଙ୍କ ଜଳ-କେଳି, ସଜ ସକାଳର ବାସ୍ନା ଯେମିତି ଓଁକାର ପରି। ଓଃ ତମେ ମହାନ୍ ଈଶ୍ୱର ସେ କହିଲେ।

ପୋଖରୀର ଗାଧୁଆ ଆଉ ତର୍ପଣ ସାରି ସେ ସୂର୍ଯ୍ୟଙ୍କୁ ନମସ୍କାର କଲେ। ଫେରି ଆସୁ ଆସୁ ଆର ତୁଠ ଆଡ଼କୁ ଅନେଇଁଲେ, ଚମ୍‌କି ପଡ଼ିଲେ। ଏ କ'ଣ ପ୍ରଭୋ ! ମୋତେ କି' କି' ପରୀକ୍ଷାରେ ପକଉଚ ! ସେଇ ଝୁଅ। ତା' ଶାୟା ଛାତି ଅଧାଯାଏ ବାନ୍ଧି ସ୍ନାନରତ। କେଶ ମୁକୁଳା ଗୋରୀ ପିଠିର କାକର ବୁନ୍ଦା ପରି ପାଣି ଟୋପା। ଭିଜା ଶାୟା ନିତମ୍ବରେ ଲାଗି ଏମିତି ଏକ ଚିତ୍ର ସୃଷ୍ଟି କରୁଚି, ଯେମିତି କୋଣାର୍କର ନର୍ତ୍ତକୀର କୌପୀନ୍ ପରିହିତ ନିତମ୍ବ କି ଅଜନ୍ତା-ଏଲୋରା କି ଆକର୍ଷଣ ଅଛି ସେ ଝୁଅଠି କେଜାଣି ? ପଣ୍ଡିତେ ସେମିତି ଅନେଇଁଥାନ୍ତି। ଏଣେ ପୂଜା ବେଳ ଗଡ଼ିଗଲାଣି। ଆଖି ବୁଜି ଶିବ ଶିବ କହିଲେ ସେ। କ୍ଷମା ମାଗିଲେ ଭୁଲ୍ ପାଇଁ। ଏହି ଭିତରେ ଝିଅଟି ଚାଲିଗଲାଣି। ଗାଏନେକ୍‌କୁ ଇଶାରା ଦେଇ କୁଆଡ଼େ ସିଲ୍‌ଭର୍‌ଟେଲ୍ ଛୁପିଯିବା ପରି।

ପଣ୍ଡିତେ ଠିକ୍ କଲେ, ଆଜି ଉପରବେଳା, ସେ ଝିଅଟି ବିଷୟରେ ଖବର ନେବେ। ସେ କିଏ, କେଉଁଠି ତା' ଘର କାଇଁ କେବେତ ମନ୍ଦିର ଆସେନି। ଆସିଥିଲେ ଅବା ତାକୁ ଦେଖିଥାନ୍ତେ। କେବେବି ଆସିନି ସେ। ହଉପଛେ କାର୍ତ୍ତିକ ବୁଢ଼ ବା

ଜାଗର। ତା' ମନ ଭିତରେ କ'ଣ କେହି ଅଛି କି ଥିଲା, ଏବେ ନାହିଁ! କାର କ'ଣ ସେ ସ୍ମୃତି ଜାବୁଡ଼ି ଧରିଚି, କେଜାଣି ?

ଝିଅଟିର କଥା ଭାବିବା ବେଳକୁ ପଣ୍ଡିତେ ଅଧୈର୍ଯ୍ୟ ହେଇପଡ଼ନ୍ତି। ପୂଜାର ମନ ଲାଗେନା। ନଡ଼ିଆ ଭାଙ୍ଗିବା ବେଳେ ଛିଟିକ୍ ପଡ଼େ। ଭଲରେ ସେ ଖାଇପାରନ୍ତିନି କି ଶୋଇପାରନ୍ତିନି ଶୟନେ, ସପନେ, ଜାଗରଣେ ଖାଲି ତା' କଥା !

ପଣ୍ଡିତେ ଭାବୁଥିଲେ, ଗାଏନେକ୍ ଆଉ ସିଲ୍‌ଭର୍‌ଟେଲ୍‌ର ପ୍ରେମ ପ୍ରତି କ୍ରମଶଃ ତାଙ୍କ ମନ ସମ୍ବେଦନଶୀଳ ହେଇଉଠୁଚି। ସେ କ୍ରମଶଃ ସେମାନଙ୍କୁ ପସନ୍ଦ୍ କରୁଚନ୍ତି। ପ୍ରେମ ପାପ ନୁହେଁ, ବରଂ ସତ୍ୟ, ଶିବ, ସୁନ୍ଦର ବୋଲି। ନିଜେ ନିଜକୁ ବୁଝଉଚନ୍ତି।

ଶିବ, ପରମ ପ୍ରେମମୟ ବୋଲି ପଣ୍ଡିତେ ଜାଣନ୍ତି। ଏତେ କଡ଼ା ଦିଶୁଁ ହେଲେ, ହୃଦୟ ମାସୁମ୍, ଭକ୍ତର ଏତେ ଟିକେ କଷ୍ଟ ସେ ସହିପାରନ୍ତିନି। ଦାରିଦ୍ର୍ୟ ଦୁଃଖ ଦୟନାୟ ନମଃ ଶିବାୟ, ଦାରିଦ୍ର୍ୟ ଦୁଃଖ ଦହନାୟ ନମଃ ଶିବାୟ। ଆରମ୍ଭ କଲେ ପଣ୍ଡିତେ ନଟ୍‌ରାଜ୍‌ଙ୍କ ବନ୍ଦନା। ପ୍ରସିଦ୍ଧ ସ୍ତୋତ୍ର, ଶିବ ତାଣ୍ଡବ। ସବୁ ଆଡ଼େ କମ୍ପି ଉଠିଲା ଆଖି ବନ୍ଦ୍ କଲେ। ଦେଖିଲେ, ସିଲ୍‌ଭର୍‌ଟେଲ୍ ଉପର ଗାଏନେକ୍। ସେଇ ଅଜ୍‌ନବୀ ଝିଅଟିର ବାହୁ ବନ୍ଧନରେ ଥାଇ ସେ ନୃତ୍ୟରତ। ତାଙ୍କ କାନରେ କିନ୍ତୁ କିଏ ଯେମିତି ଚୁପି ଚୁପି ଗାଇ ଚାଲିଥିଲା 'ଈଶ୍ୱର ସତ୍ୟ ହେ, ସତ୍ୟ ହି ଶିବ ହେ, ଶିବ୍ ହି ପ୍ରେମ ହେ, ପ୍ରେମ୍ ହି ସୁନ୍ଦର ହେ, ଜାଗୋ' ଉଠୋ' ଦେଖୋ', ଜଗତ୍ କି ସ୍ୱାମୀ, ଜୀବନ୍ ଭି ଉଜାଗର୍ ହେ, ସତ୍ୟ ଶିବ . ସୁନ୍ଦରଂ, ଆଖି ଖୋଲନ୍ତି ତ ଦେଖନ୍ତି ସେଇ କଳ୍ପନା ଏବେ ମାନବୀ। ରାନୀ ରଂଗର ଶାଢ଼ୀ ପିନ୍ଧି, ଗଡୁରେ ପାଣି, ପିତଳ ଗ୍ଲାସ୍‌ର କ୍ଷୀର, ଥାଳିରେ ବେଲପତ୍ର ଧରି ତାଙ୍କ ଆଗରେ ସହାସ୍ୟ ବଦନରେ ଠିଆ। ସେ ତାଙ୍କ ଥରଥର ହାତରେ ଥାଳି ନେଲେ, ପଚାରିଲେ, ତମ ନାଁ କ'ଣ ? ଝିଅଟି ଧୀର ଗଳାର କହିଲା 'କବିତା'। ପଣ୍ଡିତେ ଭାବିଲେ, ତାଙ୍କ କଳ୍ପନା ଆଜିର କବିତା !

ତା' ହାତରୁ ଭୋଗ, କ୍ଷୀର ନେଇ ପଣ୍ଡିତେ ଠାକୁରଙ୍କ ଉପରେ ଚଢ଼େଇଲେ। ଶୁଭ ମନାସିଲେ। ଝିଅଟି ପଣ୍ଡିତଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିଲା। ସେ ତା'କୁ ତଳୁ ଉଠାଇଲେ। ସେ ଭୋଗ ଧରି ଚାଲି ଗଲାବେଳେ, ଦି' ଥର ପଛକୁ ଚାହିଁ ହସିଦେଲେ। ଉପର ହୋର୍‌ଫେସ୍ ଘୁମୁର୍‌ଘୁମ୍ ହେଇ ହସିଦେଲା। ରାଗରେ ପଣ୍ଡିତେ ବାଡ଼ି ଉଞ୍ଚେଇ ପାରାଟିକୁ ତଡ଼ିବାକୁ ଲାଗିଲେ। ହୋର୍‌ଫେସ୍ ରାଗୁଆ ପାରାଟା। ସେ ପରମାନନ୍ଦକୁ ଭଲଭାବେ ଜାଣେ। ଏଇ ପରମାନନ୍ଦ ତା' ଭାଇ-ଭାଉଜକୁ ମନ୍ଦିରରୁ ତଡ଼ି ଦେଇଥିଲା। ଏବେ ମୋତେ ମାରିବାକୁ ବସିଚି।

ହୋର୍‌ଫେସ୍ ଭାବୁଥିବ, ମଣିଷ ଗୁଡ଼ା ହିଁ ସବୁଠୁ ବେଶି ଅମଣିଷ। ସେମାନେ ସବୁ ଜୀବଜନ୍ତୁଙ୍କୁ ମାରିପାରନ୍ତି, ସେମାନଙ୍କ ମାଂସ ବି ଖାଇପାରନ୍ତି। ସୃଷ୍ଟିର ସବୁଠାରୁ ସ୍ୱାର୍ଥପର ଜୀବ ଏମାନେ ଭଗବାନ୍ ଏମାନଙ୍କୁ ଭାବନ୍ତି ସୃଷ୍ଟିର ଶ୍ରେଷ୍ଠ ଜୀବ ଭାବେ।

ହେଲେ ଏମାନେ ପ୍ରମାଣ କରି ଦିଅନ୍ତି ଯେ, ଏମାନେ ଗୌଣ। ଏମାନେ ମନ୍ତ୍ର ଉଚ୍ଚାରଣ କରନ୍ତି। ହେଲେ, ସେ ସମୟରେ ଆଉ କ'ଣ ଭାବନ୍ତି। ଏମାନେ ପ୍ରେମ କରନ୍ତି, ସେଥିରେ ଭଲ ପାଇବା ନଥାଏ। ଏମାନେ ଦେହକୁ ଦେହ ମିଶାନ୍ତି ସେଥିରେ ମିଳନ କମ୍ ଥାଏ। ଯେ, ଆରାଧନା କରିପାରେନା ସେ, ରାଧାକୁ ବୁଝିପାରେନା। ପ୍ରେମିକାକୁ ବୁଝିପାରେନା ଏପରିକି 'ପ୍ରେମ' ତା' ପାଇଁ ଗୋଟେ ବିଷମୟ ଶବ୍ଦ, ପାପର ପ୍ରତିଶବ୍ଦ।

ପଣ୍ଡିତେ ମନେମନେ ଭାବୁଥିଲେ, ବୁଝେଇଦେବେ ଏ ପାରାମାନଙ୍କୁ ସେ ସେମିତି ମଣିଷ ନୁହେଁ।

ବେଳେବେଳେ ପଣ୍ଡିତେ ଭାବନ୍ତି ସେ ଯେମିତି ଗୋଟେ ବିରାଟ ମାଂସଳ ମିଛ ପଛରେ ଅଣନିଃଶ୍ୱାସୀ ହେଇ ଧାଉଁଚନ୍ତି। ତାଙ୍କ ମନ ଭିତରେ ଗୋଟେ ବିରାଟ ଶୂନ୍ୟତା ରହିଛି। ସମୟକ୍ରମେ ତା'ର ଆୟତନ ବଢୁଚି ଅବା କମୁଚି। କିଏ ଗୋଟେ ଖଡେଇ ହଉଚି ଯେମିତି ହୃଦୟର କେଉଁ ନିଭୃତ କୋଣରୁ, କହୁଚି, 'ଏ' ହେଉଚି ଜାତି ମାଂକଡ଼, କାମ ମାଂକଡ଼ାମି, ଅମଣିଏ ମଣିଷ', ଯା'ର ମୂଲ୍ୟ କେବଳ ଶେଷରେ ଚୁଲିର ମୁଠାଏ ପାଉଁଶ। କେଉଁ ପାଉଁଶର ପାହାଡ଼ ଆଉ ବିଷଝରା ନଈର ଭିତର ଗାଁରେ କଟିଥିଲା ତାଙ୍କ ଶୈଶବ, ଆଜି 'ମନ୍ଦିର'ରେ ଥାଇବି ସେ ଉହଳ ବିକଳ। ସତେ ଯେମିତି ତାଙ୍କ ଜୀବନ ବ୍ୟର୍ଥ।

ସାରୀପୁତ୍ର, ଜଣେ ଶିଷ୍ୟଙ୍କୁ ବୁଝେଇଥିଲେ। ମଣିଷର ଦେହ ରୋଗର ଘର। ତା' ଦେହରେ କିଛିନା କିଛି ରୋଗ ଥାଏ। କିନ୍ତୁ ଆତ୍ମା, ଅବିନଶ୍ୱର, ଅମର, ନିରୋଗ। ପ୍ରେମ କିନ୍ତୁ ରୋଗ ନୁହେଁ ଗୋଟେ କିଂଭୂତ କିମାକାର କ'ଣ ଗୋଟାଏ। ଯା' ହେଲେ, ଦେହ ଭିତରେ କେମିତି କେମିତି ହୋଇଯାଏ। ସତେ ଯେମିତି ଭିତରେ ଗୋଟେ ରାସାୟନିକ ଚେନ୍ ପ୍ରକ୍ରିୟା ଚାଲେ। ଆଜି ପ୍ରଥମ ଥର ନୁହଁ ଅନେକ ଥର ପରେ, ଏଥର କିନ୍ତୁ ଭୀଷଣ ଭାବରେ ଏ' ତୀବ୍ର ଅନୁଭବ୍ ତାଙ୍କର ହେଉଚି–

କିଏ ଯେମିତି ଭିତରୁ କହୁଚି,
'ଧୀରେ ଧୀରେ ଉଠ୍,
ବାଇଶ୍ ପାହାଚ
ଧୀରେ, ଧୀରେ, ଧୀରେ, ଉଠ୍
ବାଇଶ ପାହାଚ
ପାହାଚେ ମୟୂର, ଚୂଳରେ ତ ପୁଚ୍ଛ
ଭଲ ପାଏ ମୁହଁ, ହୋ' ଭକତେ ମୋ'ର
ନ ଭାବିବି ପୁଣି କିଛି ଆଗପଛ
ଧୀରେ ଧୀରେ ଉଠ,
ବାଇଶ ପାହାଚ...।

ସେ ଉଠୁଚନ୍ତି ପାହାଚ ପରେ ପାହାଚ ପରେ ପାହାଚ। ଠିକ୍ ବଡ଼ ଠାକୁରଙ୍କ ପହଣ୍ଡି ପରି। ଟଣା ହଉଚନ୍ତି, ଘୋଷଡ଼ା ହଉଚନ୍ତି, ଛେଚା ହଉଚନ୍ତି, କଚା ହଉଚନ୍ତି, ଚିରା ହଉଚନ୍ତି, ଫଂଡା ହଉଚନ୍ତି, ବିହ୍ୱଳ ହୋଇ କାନ୍ଦୁଚନ୍ତି, 'ମନ୍ନାଥଶ୍ରୀ ଜଗନ୍ନାଥ, ମଦ୍‌ଗୁରୁ ଶ୍ରୀ ଜଗଦ୍‌ଗୁରୁ ମହାତ୍ମା ସର୍ବଭୂତାତ୍ମା, ତସ୍ମୈ ଶ୍ରୀ ଗୁରବେ ନମଃ'

ହଁ ଅନୁଭବ୍‌ର ତୀବ୍ର ଦରଜ୍‌ରେ ମୁଁ ଆଜି କ୍ଲାନ୍ତ। ମୋତେ ପ୍ରବଳ ଜ୍ୱର। ଧୀରେ ଧୀରେ ଆଜି ମୁଁ ଉଠୁଚି ପାହାଚ। କାନରେ ବାଜୁଚି ଗୀତ ଧୀରେ ଧୀରେ ଉଠ, ବାଇଶି ପାହାଚ, ପାହାଡି ମୟୂର, ଚୂଳରେ ତ ପୁଚ୍ଛ। ଆକାଶ୍ ଭସା ମେଘର ଆଜି ଅଭିଷେକ। କୁଆଡ଼େ ଗଲ ଗାଏନେକ୍, ସିଲ୍‌ଭରଟେଲ୍, ହୋର୍‌ଫେସ୍, ଦେଉଳିଆ, ଧୋବଲା, ଲୋଟଣୀ, କଳାଧଳା, ପଶାପାଲି, ସବୁ ପାରାମାନେ ଆସ। ତମକୁ ଦେବି ମୁଁ ପୀରତିର ରସ। କଠିନ ଶ୍ଳୋକର ଉଚ୍ଚାରଣ ନୁହଁ ବିଶ୍ୱାସ୍ କର। ମୁଁ ପାଦ୍ରୀ କି ପୂଜକ ନୁହଁ, ରସିକ, ପ୍ରେମିକ ଆସ ପ୍ରକୃତି ମୁଁ ତମର ଆଲିଙ୍ଗନ ପାଇଁ ଅପେକ୍ଷାରତ।

ଆସ ମୋ'ର୍ ପ୍ରେମ ମୁହାଁ, ଅଭିମାନ୍, ମେଘମୁହାଁ ଅଭିଯାନ୍ ପ୍ରେମର ପଦଯାତ୍ରାର ମୁଁ ବି ପଦାତିକ। ତମେ ଆରଣ୍ୟକ ହେଲେ ମୁଁ ବି ନୁହେଁ ପଳାତକ। ଆସ କଳ୍ପନା, ତମେ ଦେବୀରୁ ଏବେ ମାନବୀ। କରନା ଛଳନା।

ପଣ୍ଡିତେ ଏ ଭିତରେ ଅଜାଣତ୍‌ରେ କେତେବେଳେ କବିତାର ଘର ପାଖରେ ପହଞ୍ଚିଲେଣି ତାଙ୍କ ନିଜକୁ ଜଣାନାଇଁ। ଦୁଆର ପାଖରେ ମନେ ପଡ଼ିଲା ସେ କବିତାର ଘର ପିଣ୍ଡାରେ ଠିଆ ହୋଇଚନ୍ତି ତରଂଗ ତରଂଗ ହୋଇ ପଛକୁ ଅନଉଥାନ୍ତି ଯେ କେହି ଦେଖିନାହାନ୍ତି ? ଏତିକିବେଳେ କୋଉଠି ଥିଲା କେଜାଣି ହୋର୍‌ଫେସ୍ କହି ଉଠିଲା ଘୁଟର୍ ଘୁଁ ଘୁଟର୍ ଘୁଁ, ରାଗିଗଲେ ପଣ୍ଡିତେ। ହାତ ଉଠେଇ ବାଡ଼େଇବାକୁ ବାହାରିଲେ। ଦୁଆର ଫିଟେଇ ବାହାରି ଆସିଲା କବିତା। ଧଳା ଉପରେ କଳା ବୁଟି ପ୍ରିଣ୍ଟ୍‌ର ଶାଢ଼ୀ। ଶାଢ଼ୀ ଠିକ୍ ଉପରକୁ ଉନ୍ନତ ନାଭି, ଉଦ୍ଧତ ବକ୍ଷୋଜ, ବକ୍ଷପଟି ଫଟାଇ ବାହାରିଆସିବାକୁ ଉଦ୍ୟତ। ଉନ୍ନତ ନାସା, ଟଣାଟଣା ଆଖି। ଆଖିରେ କଜ୍ଜଳ। ବେକରେ ସ୍ୱର୍ଣ୍ଣହାର, ଈଷତ୍ ପୃଥୁଳ ନିତମ୍ବ। ଉନ୍ନତ ଜଘନ, ଗୋରା ବଦନ। ଓଃ ଉର୍ବଶୀ କି, ରମ୍ଭା, କି, ମେନକା ? ପାଦ ଛୁଇଁ ପ୍ରଣାମ୍ କଲା କବିତା। ସ୍ୱାମୀଜୀ ଆପଣ ? ଛିଃ ଏ' ପାରାଟିକୁ ବାଡ଼ାନ୍ତୁ ନାଇଁ ବିଚରା ପକ୍ଷୀଟାଏ। 'ନାଇଁ ଯେ ମୁଁ ତମ ପାଇଁ ଅନ୍ନଭୋଗ ଆଣିଥିଲି, ଅରୁଆ ଭାତ, ଡାଲମା, ଖଟା, ପାଏସ୍। କବିତା ଆଶ୍ଚର୍ଯ୍ୟ ହୋଇଗଲା। ସ୍ୱାମୀଜୀଙ୍କ ପରି ଲୋକ ତା' ଘରେ... ସେ ଦଉଡ଼ିଯାଇ ଲୋଟାଏ ପାଣି ଆଣି ତାଙ୍କ ଗୋଡ଼ ଧୋଇ ଦେଲା। ନିଜର ଲୁଗାକାନିରେ ତାଙ୍କ ଗୋଡ଼ ପୋଛି ଦେଲା। ପଣ୍ଡିତେଙ୍କ ଆଖି ଲୁହରେ ପୁରି ଉଠୁଥାଏ। ଏ' କିଏ ? ମା ? ପତ୍ନୀ, ପ୍ରେମିକା ? ଭଗିନୀ ? କେତେବେଳେ ଦାସୀ, କେତେବେଳେ ରମ୍ଭା, କେତେବେଳେ ଗୁରୁମା, କେତେବେଳେବି ଚକିତ ପୁଣି ଭର୍ସିତା।

ପଣ୍ଡିତେଙ୍କ ହୃଦୟରେ କାଳିଦାସ୍ ସତେବା ବିଦ୍ୟମାନ। ସେ ଗାଇ ଉଠିଥିଲେ ନିଃଶବ୍ଦରେ– 'ଭଗବତୀ, ଭାରତୀ, ଦେବୀ ନମସ୍ତେ' କଜ୍ଜ୍ୱଳ ପୂରିତ ଲୋଚନ ଧାର, ସ୍ତନ ଯୁଗ ଶୋଭିତ, ମୁକୁତାର ହାର-' ଉଠ ମା' ତ କହିପାରିଲେନି। କହିଲେ ଉଠ ସୁନ୍ଦରୀ। ଥରୁଥିଲେ କବିତା। ସମାନ୍ ତାଳରେ ଥରୁଥିବା ତାଙ୍କର ସମଗ୍ର ଅବୟବ। ମନେପଡ଼ିଲା ପଣ୍ଡିତେଙ୍କର ଏଇମିତି ସିଲ୍‌ଭରଟେଲ୍ ଥରୁଥିଲା ଯେମିତିକି କିଛି ଗୋଟାଏ ଗିଳି ଦେଇଚି ଯାହାକୁ ଢୋକି ପାରୁନି କି ଗାଳି ପାରୁନି। ଶଂଖନଳା ଫୁଲିଯାଇଚି। ଘୁମ୍‌ରୁଚି ଆସ୍ତେ। ଘୁଡ୍ ଘୁଡ୍ ଘୁଟର୍‌କମ୍, ଘୁଡ୍ ଘୁଡ୍ ଘୁଟର୍ କମ୍। ଓଃ ପଣ୍ଡିତେଙ୍କ କଣ୍ଠରେ ଏବେ ଭିକାରୀ ବଳ 'ଆହାକି ସୁନ୍ଦର ତୋ'ର ଘୁମ୍‌ରାରେ, ଘୁମୁଘୁମୁ ଘୁମ୍‌ରୀ ପାରା...'

ସ୍ୱାମୀଜୀ କହି କବିତା ତାଙ୍କ ଛାତିରେ ଆଉଜି ଗଲା। ଦ୍ୱିପ୍ରହରର ଏ' ଡାଆଁଣିଆ ଖରା, ଛଡ଼ା କେହି କୋଉଠି ନଥିଲେ। ଥିଲେବି କେହି ରୋକି ପାରି ନଥାନ୍ତେ ଆଜି। ହସୁଥାନ୍ତୁ ତେତ୍ରିଶ୍ କୋଟି ଦେବୀ, ଚାରି ବେଦ, ପାର୍ଥ ଇନ୍ଦ୍ରିୟ, ଷଡ଼ରିପୁ, ସପ୍ତସିନ୍ଧୁ, ଅଷ୍ଟ ମାତୃକା, ନବଦୂର୍ଗା, ଦଶ ମହାବିଦ୍ୟ, ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ, ତ୍ରୟୋଦଶ ଗଳି, ଉପଗଳି, ମହାଗଳି, ଅର୍ଗଳି, ଚଉଦ ଭୁବନ, ପନ୍ଦର ପକ୍ଷ, ଷୋଡ଼ଶ ଉପଚାର, ସତର ବର୍ଷରୁ ସତୁରୀ ଯାଏଁ ପୁରୁଷ କି ନାରୀ ସମସ୍ତେ। ଆଜି ପ୍ରେମର ଘଟିଚି ବିଜୟ। କବିତା ଯିଏକି ସ୍ୱାମୀଜୀଙ୍କ ଛାତିରେ ମୁଣ୍ଡ ରଖି କଇଁ କଇଁ କାନ୍ଦୁ ଥିଲେ। ସ୍ୱାମିଜୀ ତାଙ୍କୁ ଜାକି ଧରି ତାଙ୍କ ପିଠି ଆଉଁସି ଦେଲେ ଓ ଭିତର ଘରକୁ ଗଲେ। ଦୀର୍ଘ ଦୁଇ ଘଣ୍ଟା ପରେ ଯେତେବେଳେ ସ୍ୱାମୀ ମନ୍ଦିରକୁ ଫେରିଲେ, ତାଙ୍କ ମନ ପ୍ରଫୁଲ୍ଲିତ ହୋଇ ଉଠୁଥିଲା। କେଉଁ ଏକ ପୂର୍ଣ୍ଣତା ତାଙ୍କୁ ସ୍ପର୍ଶ କରୁଥିଲା। କବିତା ଜଣେ ପୂର୍ଣ୍ଣିମା। ଏକ ପୂର୍ଣ୍ଣରୁ ପୂର୍ଣ୍ଣ ଫେଡ଼ିଲେ ପୂର୍ଣ୍ଣହିଁ ରହିଯାଏ। ଏବେବି କବିତା ସେମିତି ଗୋଟେ ପୂର୍ଣ୍ଣ ଅମୃତର କୁତୁଆ ଯୋଉଠୁ ଫଡ଼ାଏ ଓଟାରି ଆଣିଲେ ବି ସେ ସରିଯାଇନି।

ପଣ୍ଡିତେ ଯଦିଓ ଜାଣିଲେ ଯେ ସେ ବି' ଜଣେ ପତିତା ନାରୀ; ତାଙ୍କର ସ୍ୱାମୀଜୀଙ୍କ ପ୍ରତି ସମର୍ପଣ ଭାବ ତାଙ୍କୁ ଆଶ୍ଚର୍ଯ୍ୟ କଲା। ସିଲଭରଟେଲ୍ ଯେମିତି ଗାଏନେର୍ ପୁରୁଷତ୍ୱର ଚାପରେ ମିଳେଇଯାଏ ସେମିତି।

ଆଜିର ଘଟଣା ପରେ ପଣ୍ଡିତଙ୍କ ବିଶ୍ୱାସ ହେଲା ଯେ ତାଂକର ହଜାର ବାଡ଼ିଆବାଡ଼ି ସତ୍ତ୍ୱେ ଗାଏନେକ୍ ଓ ସିଲଭରଟେଲ୍ କାହିଁକି ନିଜ କାମନାର କୈଳାସ ଆଉ ବାସନାର ବୈକୁଣ୍ଠରୁ ଚାଲିଯାଆନ୍ତି ନାହିଁ। ସେମାନେ ପ୍ରମାଣ ଦିଅନ୍ତି ଯେ, ଯାହା ସତ୍ୟ, ତା' ଶିବ ଆଉ ସୁନ୍ଦର, ତାହା ଯାହାକୁ ଖରାପ ଲାଗୁ ପଛେ। ପଣ୍ଡିତ ପରମାନନ୍ଦ ଦେଖିଲେ ଯେ, ଗାଏନେକ୍‌ର କାମ ବାସନା ତା' ପେଟ ପାଖରେ ରୁନ୍ଧି ହେଇଯାଇଚି। ସେଇଥିଯୋଗୁ ସେ ଯେତେ ହୁରୁଡ଼ଉଚନ୍ତି, ସେ ସେତେ ଜିଦ୍‌ରେ ତା' ସାଥୀ ସ'

ରତିକ୍ରୀଡ଼ା କରୁଚି, କାହାକୁ ମାନୁନାହିଁ ଏଇ ଭାବନା ହିଁ ପଣ୍ଡିତେଙ୍କୁ ତା'ଙ୍କ ଭାବନାରୁ ବିରତ କଲା ବୋଲି ସେ ଆଜି ଜାଣିପାରୁଚନ୍ତି।

ପଣ୍ଡିତଙ୍କ ପେଟର ସାପଭଳି ମାଂସପେଶୀ ସଂକୋଚନ ପ୍ରସାରଣ ହେବାକୁ ଲାଗିଲା, ପ୍ରାୟ ଅନେକ୍ ସମୟରେ ସେ ପାରାମାନଂଙ୍କର ସଂଗମ କଥା ଭାବିବାକୁ ଲାଗିଲେ, ସେ ମନେମନେ ଭାବୁଥିଲେ ଆଉ ବାରମ୍ୱାର ବୁଝିପାରୁଥିଲେ ଯେ ଚିପାଦାନ୍ତ ଭିତରେ ପ୍ରାର୍ଥନା ସବୁବେଳେ ଜୀବନ୍ତ ଅବସ୍ଥାରେ ନଥାଏ ଓ ତା' ଠାକୁରଂଙ୍କୁ ଛୁଇଁପାରେନାହିଁ। ପ୍ରାର୍ଥନା ନକରି ଅନେକ୍‌ବାର ସେ ଛଳନା କରିଚନ୍ତି। ଈଶ୍ୱର ଭାବନା ବଦଳରେ କାମ ବାସନ ବେଳେବେଳେ ତାଙ୍କର ଅସ୍ତିମଜ୍ଜାକୁ ଧସେଇ ଦେଇଚି। କାମନା ପୂରଣରେ, ବିନାଶରେ ନୁହେଁ, ନିର୍ବାଣ ସମ୍ଭବ, ଏବେ ସେ ବୁଝୁଛନ୍ତି।

ପାରାମାନଂଙ୍କ ଘୁମ୍‌ରା ଆଉ ଉଦଣ୍ଡ ଆଦିମତା ପରେ ଏହେବ ନୀରବତା! ଯୋଉ ନୀରବତାର ସତ ଶୂନ୍ୟତା ଆଣିଦେଇଥିଲା।

ପଣ୍ଡିତ ପରମାନନ୍ଦ ଜାଣିଲେ ଯେ ତାଙ୍କ ନିତିଦିନିଆଁ କାର୍ଯ୍ୟସୂଚୀ କେମିତି ବେତାଳିଆ ଧରିଲାଣି। ତାଂକ ଚିନ୍ତା ଆଉଚେତନା ସବୁ ଗୋଳମାଳିଆ ହେଉଯାଉଚି, ତାଂକ ଚିନ୍ତାରେ ଭଙ୍ଗା ପକେଇବା ଗାଏନେକ୍‌ର ଭଉଣୀ ହୋର୍‌ଫେସ୍। ଏହି ପାରାଟି ବଡ଼ ଅଜବ୍ ଚରିତ୍ରର। ନିଜେ ପ୍ରେମକରେନା କିନ୍ତୁ ଅନ୍ୟକୁ ପ୍ରେମ କରିବାର ସୁମୋଦ ଦିଏ । ସାରା ପାରାପରିବାରର ଏ' ନେତ୍ରୀ, ତା' ଅନୁସାରେ ପ୍ରାୟ ସମସ୍ତେ ଚଳନ୍ତି, ତା' ଇଛାରେ ସମସ୍ତେ ବେପରୁଆ ହେଇଉଠନ୍ତି। ଯେଉଠି ସେ ଥାଏ କେଜାଣି ହଠାତ୍ ଝଡ ପରି ପହଞ୍ଚିଯାଏ।

ପଣ୍ଡିତେ ଜାଣନ୍ତି ତା'ର ସବୁଠୁ ବେଶି ରାଗ ତାଂକ ଉପରେ, ସେହିତ ପାରାମାନଂକ ପ୍ରବହମାନ ଜୀବନସ୍ରୋତର ପ୍ରତିକୂଳରେ ଠିଆହେଇଛନ୍ତି ବୋଲି ସେମାନେ ଭାବନ୍ତି, ବାରମ୍ୱାର ପଣ୍ଡିତଂକ ବିରୁଦ୍ଧରେ ବିଦ୍ରୋହ କରନ୍ତି।

ପଣ୍ଡିତ ପରମାନନ୍ଦ ବୁଝିପାରିଥିଲେ, ଏଇ ଶୟତାନ୍‌ର ସନ୍ତାନ ମାନଂକ କାଣ୍ଡ ପ୍ରାର୍ଥନା ବିରୁଦ୍ଧରେ ତାଙ୍କ ସଂଗ୍ରାମ ନିଷ୍ଫଳ, ନିରର୍ଥକ, ସେ ଶୃଂଖଳାର ସହ ଯେତେବି ପ୍ରାର୍ଥନା ଅରମ୍ଭକଲେ ସେଥିପାଇଁ ବିଫଳ ହେଲେ, ଏହି ଚିନ୍ତା ତାଂକ ପବିତ୍ରତା କୁ ପଦାଘାତ କଲା। ପାରାବତ-ମୈଥୁନ ସ୍ୱପ୍ନ ବିଭୋର୍ ମନ ତାଂକ ଉଚ୍ଚାଟ କଲା ଓ ପ୍ରାର୍ଥନା ରେ ବ୍ୟାଘାତ କଲା।

ପରମାନନ୍ଦଙ୍କ ଅନ୍ତରାସ, ବିଳପି ଉଠୁଥିଲା 'ଏ' କ'ଣ କଲୁ, ଏ' କ'ଣ କଲୁ ପରମା, ସ୍ୱାମୀ ପରମାନନ୍ଦ ସରସ୍ୱତୀ, ନିଜର ଆତ୍ମାକୁ ପାପର ପଙ୍କରେ ଚକଟି ଗୋଳେଇ ଦେଲ, ତୁ, ଏଇ ପକ୍ଷୀମାନଂକର ଯୌନଚର୍ଯ୍ୟା ଶିଖିବା ଉଚିତ୍ ନଥିଲା, ବରଂ ସେମାନେ ଶିଖିଥାନ୍ତେ ତୋଠୁ ଶୃଂଖଳା, ହେଲେ ତୁ କ'ଣ କଲୁ ପରମାନନ୍ଦ ?

ହୋର୍‌ଫେସ୍‌ର ଶୟତାନି ଖଜ୍‌ବଜ୍ ପଣ୍ଡିତଙ୍କ ଚିନ୍ତାରେ ବ୍ୟାଘାତ ସୃଷ୍ଟିକଲା, ସେ ପାରା ସାଇରନ୍ ପରି ଶବ୍‌ଦପରି ସ୍କାଇଲାଇଟ୍‌ରୁ ମନ୍ଦିରର ଚଟାଣ, ପୁଣି ଚଟାଣରୁ ସ୍କାଇଲାଇଟ୍ ଏମିତି ହବାକୁ ଲାଗିଲା, ସେମିତି ସେ ହୋର୍‌ଫେସ୍ କୁ ସ୍କାଇଲାଇଟ୍‌ରେ ଖୋଜିଚନ୍ତି, ଚିଁ ଚିଁ କରି ଆଉ ଦଳେ ବାଦୁଡ଼ି ପକ୍ଷୀ ଉଡ଼ିଆସିଲେ ଏଗୁଡ଼ିକ ନର୍କର ପକ୍ଷୀ, ବାଦୁଡ଼ି, କହୁଥିଲା ଗୋଟେ ଭୌତିକ ଦୃଶ୍ୟପରି ଓଃ କି ବୀଭତ୍ସ !

ସେଇ ନର୍କର ପକ୍ଷୀ ବାଦୁଡ଼ିଗୁଡ଼ିକ କଟ୍‌କଟ୍ କରି ଉଡ଼ିବୁଲିବାକୁ ଲାଗିଲେ, ପଣ୍ଡିତେ ନିଜକୁ ଦୃଢ଼କରି ସେମାନଂକ କବଳରୁ ମୁକ୍ତିପାଇବାକୁ ଚେଷ୍ଟାକଲେ ।

ନୈରାଶ୍ୟବୋଧର ପହିଲି କେଉଁ ମୁହୂର୍ତ୍ତ ନୀରବତା ଭରା ଓ ଅସହ୍ୟ ଥିଲେବି ଏଇ ପାରାମାନେ ନିଜନିଜ ପ୍ରେମରେ ମସ୍‌ଗୁଲ । ଥଣ୍ଟରେ ଥଣ୍ଟ, ପରରେ ପର, ଡ଼େଣାର ଡ଼େଣା. ମରାମରି, ଚଟାଚଟି, ଯେମିତି ସରିଯିବ ଏ ଅସରାରତି ଆଃ !

ପଣ୍ଡିତଂକ ପେଟ ପୁଣି ସଙ୍କୁଚିତ ହେଇ ଆସିଲା । ତାଂକ କଳ୍ପନାର ମାନବୀୟ 'କବିତା' ସ' ଏବେ ହେଇଚି ତାଂକର କାଳ୍ପନିକ ମିଳନ । ପଣ୍ଡିତେ ଓ କବିତା ଦିହେଁ ଦିଜଣଙ୍କର । କବିତା ଙ୍କ ଉଲଗ୍ନ ନିଟୋଳ ଯୌବନକୁ ପିଇଯାଇଚି ଚାଟିଯାଉଚି ପଣ୍ଡିତଙ୍କ ଓଠ । ହାତ ଖେଳିଯାଉଚି କବିତା ନିଷିଦ୍ଧ ଅଂଗ ଗୁଡ଼ିକର, ଯେମିତି ସାପ ନିଜ ହୁଙ୍କାଭିତରେ ଖେଳରେ ମାତିଚି । ହଃ ଆଃ ସୀତ୍କାର ବାହାରୁଚି ମୁହଁରୁ ।

ଗାଏନେକ୍‌ର ସେଇ ପୁରୁଖା ଜୋର୍‌ଦାର୍ ଘୁମ୍‌ରା ତା' ଦିହତଳେ ଚାପିହେଉଥିବା ସିଲଭର୍‌ଟେଲ୍‌କୁ କାମ ଜର୍ଜରିତ କରୁଥିଲା । ପଣ୍ଡିତେ ବି ଥରିଲା ହାତରେ କବିତାର ଛାତିକୁ ଚୁର୍‌ମାର୍ କରି ପକଉଥିଲେ । ବଡ଼ ବିକଳ ଭାବେ ହାତ ସଲସଲ ହେଇ ଚାରିଆଡ଼େ ଖେଳି ଯାଉଥିଲା କବିତାଙ୍କ ଦେହରେ । ଗାଏନେକ୍‌ର ଦେହର ନିମ୍ନାଂଶ ପାଖକୁ ଆସୁଥିବା ସିଲ୍‌ଭର୍‌ଟେଲ୍‌ର ରୂପେଲୀ ଲାଞ୍ଜ ଆଡ଼କୁ । ବାହାରେ ବୀର୍ଯ୍ୟ ବା ବର୍ଷା ପୃଥିବୀକୁ ଶାନ୍ତ କରୁଥିଲା । ହେଲେ ପଣ୍ଡିତେ ଅଶାନ୍ତ । ଲାଭା ବାହାରିବ ବାହାରିବ ହେଇ ରହିଗଲା ଭିତରେ । ଅସହ୍ୟ । ଏ' ଅସହ୍ୟ ।

'ମୋ' ଆଖି ଫୁଟି ନଗଲା କାହିଁକି, ଚିତ୍କାର କଲେ ପଣ୍ଡିତେ । ଏ ପୃଥିବୀ ଫାଟିଯାନ୍ତା, ସେ ପଶିଯାନ୍ତେ । ଏ ପାପୀମାନେ ମୋ' ପବିତ୍ରତାକୁ ନଷ୍ଟ କରିଦେଲେ କାହିଁକି ?

ଏହି କୁତ୍ସିତ ଦୃଶ୍ୟ ଦେଖି ପାଗଳପ୍ରାୟ ପାଦ୍ରୀ ତାଳି ମାରିଲେ ସେମାନଙ୍କୁ ହୁରୁଡ଼େଇବାକୁ । ସେ ମୁହୂର୍ତ୍ତ ସରିଚି । ଏଥର, ପ୍ରେମିକ, ପ୍ରେମିକା ଉଭୟେ ଉଭୟଙ୍କର ମୁହଁକୁ ମୁହଁ ଘଷୁଥିବେ ପରମ ତୃପ୍ତିରେ । ସତେବା ଜହ୍ନର ପାଖାପାଖି ହେଉଚି ଏ ପୃଥିବୀ !

ପଣ୍ଡିତ ପରମାନନ୍ଦଙ୍କର ବୟସ୍କ ମାଂସପେଶୀ, ଘାଗଡ଼ା ସ୍ୱର, ସବୁ ଏକା ସଂଗେ ଶବ୍‌ଦ କରୁଥିଲେ । ଚିତ୍କାର କରୁଥିଲେ ବିଳପୁଥିଲେ । ତାଙ୍କ ଭିତରେ ଆତ୍ମା କାନ୍ଦୁଥିଲା ।

ସେ ନିଜକୁ କ୍ଷମା କରିପାରୁନଥିଲେ। ଏ ଦୃଶ୍ୟକୁ ବି ଭୁଲିପାରୁ ନଥିଲେ। ଯୁଗନଦ୍ଧ ଦୃଶ୍ୟ, ପ୍ରଣୟୀର ଦୃଷ୍ଟିର ଯୁଗଳବନ୍ଦୀ, ଅଳସ ଆଲିଙ୍ଗନ, ଚଞ୍ଚୁ ଘଷାଘଷି, ପରସ୍ପର ପ୍ରେମର ଉଷ୍ମତା ଇତ୍ୟାଦି ତାଙ୍କୁ ଏବେବି ମୋହାବିଷ୍ଟ କରି ରଖିଥିଲା।

ଏ ଦୃଶ୍ୟ ତାଙ୍କ ପୂର୍ଣ୍ଣତାକୁ ବିକଳାଙ୍ଗ କରିଦେଲା। ତାଙ୍କ ମୁହଁ ହେଇଗଲା ପାଣ୍ଡୁର। ମୁଣ୍ଡ ବଥେଇଲା, ଜଗତ ଚାହିଁଲା, କିଛି ଗୋଟେ ପକ୍ଷୀଙ୍କ ଉପରକୁ ଫିଙ୍ଗିଦେବ। ଏମାନଙ୍କ ନୀଚ ମୈଥୁନ, ଠାକୁରଙ୍କ ଆଗରେ ତାଙ୍କୁ ନୀଚ ସଜେଇ ଦେଲା ଓ ତାଙ୍କ ପବିତ୍ରତା ନଷ୍ଟ କଲା। ସତେ ଯେମିତି ତାଙ୍କୁ ସୁଷୁମ୍ନା ଈଶ୍ୱର ଓ ମଣିଷ ମଝିରେ ଗୋଟେ ପାଚେରୀ ପରି ଦଣ୍ଡାୟମାନ ହେବାକୁ ଲାଗିଲା।

ଜ୍ୱଳନର ଶେଷାଙ୍କରେ ସେମାନଙ୍କର ରକ୍ତର ତରଙ୍ଗାୟିତ ଉଦ୍‌ବେଳନ ଚମ୍‌କି ଉଠିଲା। ଥରେ ଥରେ ଗାଏନେକ୍ ଓ ସିଲ୍‌ଭର୍‌ଟେଲ୍ ଘଷାଘଷି ହେଉଥିଲେ ପରସ୍ପର ଦେହରେ। ପରେ ପରେ ସେମାନେ ଆଖିମୁଜି ବିଶ୍ରାମ ନେଲେ ଓ ନିକଟରେ ଘଟିଥିବା ସୁନେଲି ଅତୀତକୁ ରୋମନ୍ଥନ କରୁଥିଲେ।

ସେମାନଙ୍କର ଜ୍ୱଳନର ଶେଷାଙ୍କ ଏକ ପ୍ରୟାଗ ଅଙ୍କ। ସେଥିରେ ପ୍ରକାଳରେ ଆବିଳତାର ସ୍ଥାନ ନାହିଁ। ପରସ୍ପର ପରସ୍ପର ଭିତରେ ତଲ୍ଲୀନ ହେଇଚନ୍ତି। ପ୍ରେମର ଉଦାରତା ଦି' ଜଣ ଯାକୁ ଏକାକାର କରିଦେଇଚି। ଏବେ ଉଭୟେ କ୍ଳାନ୍ତ। ପରସ୍ପର ଆଖିମୁଦି ପରସ୍ପରକୁ ପ୍ରଶଂସା କରୁଚନ୍ତି।

ଏପଟେ ପଣ୍ଡିତଙ୍କ କଥା, ଅବସ୍ଥା କହିଲେ ନସରେ। ତାଙ୍କ ଅବସ୍ଥା ତଦ୍ରୂପ। ତାଙ୍କ ନାଭି ଫଟାଇ ବାହାରି ଆସୁଚି ଦୀର୍ଘଶ୍ୱାସ। ଏକ ବିଦ୍ୟୁତ୍ କରେଣ୍ଟ ଯେମିତି ଖେଳିଯାଉଚି ସୁଷୁମ୍ନାରେ, ଅଜବ୍ ସଂବେଦନ ସବୁ ଲୋମ କୂପରୁ ଉର୍ଦ୍ଧ୍ୱ ମୁଦ୍ରାରେ ଉପରକୁ ଉଠୁଚନ୍ତି ଓ ତଳକୁ ଖସୁଚନ୍ତି।

ଦେହର ପଚେନ୍ଦ୍ରିୟ ଦାବୀ କରୁଚନ୍ତି ଆମ୍ଭ ଭାଗ, ଆମ୍ଭ ଭୋଗ। ନିଜର ନିଜର ଦାବୀ ଉପସ୍ଥାପନ କରିବାରେ ମାହିର୍ ଏମାନେ। ସବୁ ଧର୍ମଗ୍ରନ୍ଥରେ ଏ ସବୁକୁ ନିୟନ୍ତ୍ରଣ କରିବାକୁ କୁହାଯାଇଚି କିନ୍ତୁ ପଞ୍ଚେନ୍ଦ୍ରିୟ କୁ କେହି ଆଜିଯାଏ ନିୟନ୍ତ୍ରଣରେ ରଖିପାରିଚି କି? ସମସ୍ତେ ଜାଣନ୍ତି। ଭଗବାନ୍ ବୁଦ୍ଧ ବି କହୁଥିଲେ 'କାମନା ଦୁଃଖର କାରଣ।' ସେ କଥା ସତ ବି। ସତ ବୋଲି ସେ ଅନୁଭବ୍ କରୁଚନ୍ତି ଗାଏନେକ୍ ଓ ସିଲ୍‌ଭର୍‌ଟେଲ୍ ସେମାନଙ୍କ କାମ ବାସନା ଚରିତାର୍ଥ କରିଚନ୍ତି। ସେମାନେ ଧନ୍ୟ ହେଇଚନ୍ତି। ଯଦିବା ପାପ କରିଚନ୍ତି ବୋଲି କୁହାଯାଏ, ସେମାନେ ନିଶ୍ଚୟ ପବିତ୍ର ପାପୀ।

ପରମାନନ୍ଦ ଜାଣନ୍ତି ତାଙ୍କ ମନରେ ବସିଚି ତାଙ୍କ କଳ୍ପନା, ସେଇ ଝିଅ 'କବିତା'। ଅୟ ମନୋବାକ୍ୟରେ ସେ ବୁଝୁଚନ୍ତି ଯେ କବିତାଙ୍କ ବିନା ତାଙ୍କ ଜୀଇଁବା ଅସମ୍ଭବ। ତାଙ୍କର ଏମିତି ମୃତ ଭାବେ ଜୀଇଁବା, ଭଗବାନଙ୍କୁ କ'ଣ ଭଲ ଲାଗିବ, ତାଙ୍କ ନିଜକୁ ତ ଭଲ ଲାଗୁନାହିଁ।

ପଣ୍ଡିତେ ଭାବୁଥିଲେ ଏ' ଶୁଷ୍କ ଜୀବନ ସେ କ'ଣ ପାଇଁ ଆପଣେଇଲେ, ଭାବିଥିଲେ ସେ ପରିବାରର ଜଂଜାଳ ଭିତରେ ପଶି ପାରିଥାନ୍ତେ। ମନ୍ଦିରର ନିଃଶବ୍ଦ ପରିବେଶ, ତାଙ୍କର ଏକାକୀତ୍ୱ ପ୍ରଥମେ ପ୍ରଥମେ ତାଙ୍କୁ ଭଲ ଲାଗୁଥିଲା ଏବେ କିନ୍ତୁ ଏହି ଅନୁଭୂତି ତାଙ୍କୁ କଷ୍ଟ ଦଉଚି।

ବେଳେବେଳେ ସେ ଆଶ୍ଚର୍ଯ୍ୟ ହୁଅନ୍ତି କ୍ଷୁଧା, ତୃଷ୍ଣା ପରି ଯୌନକ୍ଷୁଧାର ରାକ୍ଷସ ସମସ୍ତଙ୍କୁ ଅନ୍ଧ କରିଦିଏ, ଯେମିତି ତାଙ୍କୁ ଅନ୍ଧ କରିଚି। ସେ ଯେତେ ତମସୋର୍ମାଂ ଜ୍ୟୋତିର୍ଗମୟ ଉଚ୍ଚାରଣ କଲେବି ସେ ତମସା ଦୂର ହେଇପାରୁନାହିଁ। ତାଙ୍କର କବିତା ପାଇଁ ପ୍ରେମ ଅଛି ଏ ବିଷୟ ଉଭୟଙ୍କୁ ଜଣା। ଦୁହେଁ ଦିହିଁଙ୍କୁ ଭଲ ପାଆନ୍ତି ଏହା ସତ। ପାଟି ଫିଟାଇ ଉଭୟେ ଉଭୟଙ୍କୁ କହିପାରୁନାହାନ୍ତି କାହିଁକି ?

କବିତାକୁ ସେ ଭଲପାଇବା ଯଦିଓ ପ୍ରଥମେ ଦୈହିକ ଆକର୍ଷଣରୁ ଜାତ, ତଥାପି ଏବେ ଏହା ମାନସିକ ସ୍ତରକୁ ଖେଦିଯାଇଚି। ପଞ୍ଚଭୂତ ଭିତରେ 'କବିତା'କୁ ସେ ଦେଖିପାରୁଚନ୍ତି, ଅନୁଭବ୍ କରିପାରୁଚନ୍ତି।

କବିତା ବି ଠିକ୍ ସେୟା ଭାବନ୍ତି, ସେୟା ଅନୁଭବ୍ କରନ୍ତି। ପ୍ରଥମ ଦେଖାରୁସେ ପଣ୍ଡିତଙ୍କ ବ୍ୟକ୍ତିତ୍ୱର ଆକର୍ଷଣରେ ନିଜକୁ ହରେଇ ଦିଅନ୍ତି। ସେ ସାଧାରଣ ଦୈହିକ ପ୍ରେମର କଳ୍ପନା କରିନଥିଲେ। ମାନସିକ ସ୍ତରରେ ପଣ୍ଡିତକୁ ଭଲ ପାଉଥିଲେ।

କବିତା ଭାରି ଧୀର ସ୍ଥିର। ସେ ଅତି କମ୍ ବୟସର ନୁହନ୍ତି। ପରିସ୍ଥିତିକୁ ଅନୁଧ୍ୟାନ କରିବା, ସମସ୍ୟାକୁ ଧୈର୍ଯ୍ୟର ସହ ବିଚାର କରିବା। ଏ ବିଷୟରେ ସେ ସବୁକଥା ଜାଣନ୍ତି। ସେ ଜଣେ ଶିକ୍ଷୟିତ୍ରୀ। ପ୍ରେମ, ତାଙ୍କ ପାଇଁ 'ପାପ' ନୁହେଁ ଏକ ତପସ୍ୟା। ଯା' ସେ କରୁଚନ୍ତି କରିବେ ମଧ୍ୟ। ଏ ତପସ୍ୟା ପ୍ରାପ୍ତି ଓ ଅପ୍ରାପ୍ତିର ଊର୍ଦ୍ଧ୍ୱରେ।

ପଣ୍ଡିତେଙ୍କ ମନ ଆଉ ଦିହର ଅବସ୍ଥା ଦେଇ ଗାଏନେକ୍, ସିଲ୍‌ଭରଟେଲ୍, ହୋର୍‌ଫେସ୍ ଓ ଅନ୍ୟ ପାରାଗୁଡ଼ିକ କିଛି ସମୟ ଚୁପ୍‌ଚାପ୍ ବସି ରହିଲେ ଖୁଣ୍ଟ ପରି। ସୂର୍ଯ୍ୟଙ୍କ ବୁଡ଼ିଯିବା ସହ ପ୍ରାର୍ଥନାର ବେଳ ବି ହେଇ ଯାଇଥିଲା। ପାରାମାନେ ନିଜ ନିଜ ବସାକୁ ଯିବା ପାଇଁ ମଉକା ଖୋଜୁଥିଲେ।

ଜୋର୍‌ରେ ଘୁମ୍‌ରି ପାରାଗୁଡ଼ିକ ପରସ୍ପର ଲଗାଲଗି ହେଇ ବସିଲେ। ହେଉଥିବା ଶବ୍ଦ ଆଡ଼କୁ ପଣ୍ଡିତେ ହାତ ଉଠାଇଲେ। ସେମାନଙ୍କୁ ଘଉଡ଼ିବାକୁ ଲାଗିଲେ। ପାରାମାନେ ସେମିତି ଅବିଚଳିତ। ସେମାନେ ଯେମିତି କହିବାପାଇଁ ଚାହୁଁଥିଲେ 'ଏ' ମନ୍ଦିର ଆମର ଘର, ଆମେ ଯେତେବେଳେ ଇଚ୍ଛା ଯିବୁ ଆମକୁ କେହି ବାଧ କରିବେ ନାଇଁ।

ପଣ୍ଡିତେଙ୍କ ତାଳି ଆଉ ହାତ ଉଠେଇବା ଦେଖି ହୋର୍‌ଫେସ୍ ଅଟ୍ଟା କଲା। ଟିକିଏ ସମୟ ରହି ଜୋର୍‌ରେ ଉଡ଼ି ପଳେଇବାକୁ ଲାଗିଲା। ତା'ପରେ ଫ୍ଲାପ୍‌ଫ୍ଲାପ୍

ଶବ୍ଦ କରି ପଣ୍ଡିତେଙ୍କ କାନ୍ଧ ପାଖ ଦେଇ ଦି'ଥର ଉଡ଼ିଗଲା। ପଣ୍ଡିତେ ଚମକି ଉଠିଲେ। ଏହି ଦୁଷ୍ଟ ପାରାଟା ତାଙ୍କୁ ଖୁମ୍ପି ପକେଇବନିତ! ତାଙ୍କ ଲୁଗା ଚିରି ପକେଇବନିତ! ହଁ ମ ସାଧାରଣ ପାରାଟେ ମୋର କ'ଣ କରିବ? କ'ଣ ବା କରିପାରିବ? ହୋର୍‌ସେଫ୍‌ର ବିଦ୍ରୋହକୁ ଖାତିର୍ ନକରି ସେ ପୁଣି ଥରେ ସେମାନଙ୍କୁ ତଡ଼ିବାକୁ ଲାଗିଲେ।

ପ୍ରତିଟି ପ୍ରତିକୂଳ ପରିସ୍ଥିତି ପାରାମାନଙ୍କ ସଂହତିକୁ ବଢ଼େଇ ଦେଲା। ସେମାନେ ପରସ୍ପର ପରସ୍ପରକୁ ସାହାଯ୍ୟ କରୁଥିଲେ। ଦି'ଜଣ ପାରା ପ୍ରେମ କରୁଥିଲାବେଳେ ଆଉ ପାରାମାନେ ଜଗି ରହୁଥିଲେ। ଏହା ଗୋଟେ ବିରଳ ଉଦାହରଣ।

ମଣିଷ ସମାଜରେ କିନ୍ତୁ ଏମିତି ହୁଏନି, ପ୍ରେମୀମାନଙ୍କର ଶତ୍ରୁ ସଭିଏଁ। ସମସ୍ତେ ଚାହାନ୍ତି ଏମାନେ ମରନ୍ତୁ। ମରିବାପରେ ଅବଶ୍ୟ ଏମାନଙ୍କ ଚରିତ୍ରକୁ ନେଇ ଇତିହାସ୍ ଲେଖାଯାଇପାରେ।

ଏଇ କବିତା, ଯେତେବେଳେ କୁନିଝିଅ ଥିଲା, ସେତେବେଳେ କେତେ ଅଲିଅଳ ନଥିଲା ଆଉ କେତେ ଗେହ୍ଲା ନଥିଲା। ମାତ୍ର ତେର ବର୍ଷ ବୟସରେ ବାପା ଚାଲିଗଲେ। ପଣ୍ଡିତେଙ୍କ ବାପାଙ୍କ ପରି ସେ ବି ଥିଲେ ସ୍କୁଲ୍ ମାଷ୍ଟର୍। ଭଲ ପଢ଼ାନ୍ତି ବୋଲି ତାଙ୍କର ଖ୍ୟାତି ଥିଲା। ପିଲାମାନେବି ତାଙ୍କୁ ଭଲ ପାଉଥିଲେ ଆଉ ଭକ୍ତି କରୁଥିଲେ। ବାପା ଚାଲିଗଲା ପରେ ତା' ଅବସ୍ଥା ଶୋଚନୀୟ ହେଇପଡ଼ିଲା। ମା' ଆଉ କ'ଣ ରୋଜଗାର କରିବ ପାଠପଢ଼ା ସହ କବିତା ଟିଉସନ୍ ଆରମ୍ଭ କଲା। ବାପାଙ୍କ ଖ୍ୟାତିକୁ ପୁଞ୍ଜି କରି ଟିଉସନ୍ କଲା ଓ ଅଳ୍ପଦିନରେ ଭଲ ଗୁରୁମା' ବୋଲି ତା'ର ବି ନାଁ ହେଲା। ସବୁ ହେଲାଯେ ଦିନେ ଦିନେ ସେ ତା' ଭବିଷ୍ୟତ ବିଷୟ ଭାବି ଶିହରି ଉଠେ। ଜଣ ଜଣକୁ ଈଶ୍ୱର ଏମିତି ହାନିମାନ କରି ଜନ୍ମ ଦିଅନ୍ତି କାହିଁକି?

ସମୟର କଷାଘାତରେ ତା' ମନ ମରି ମରି ଆସୁଥିବା, ତା' ସୌନ୍ଦର୍ଯ୍ୟ ଯେତିକି ବଢ଼ୁଥିଲା ତା' ମା' ସେତିକି ଚିନ୍ତିତ ଥିଲେ। ଆଗରୁ ଏ ଘରଟି ଛଡ଼ା ତାଙ୍କର ପୈତୃକ ସଂପତ୍ତି କିଛି ନାହିଁ। ଯେତିକି ରୋଜଗାର ହେଉଚି, ଆଜିର ମହଙ୍ଗା ଯୁଗରେ ଘର ଚଳେଇବା କାଠିକର ପାଠ। ଅଧିକା ସ୍ୱପ୍ନ ଦେଖି ହେଉ ନାଇଁ। ଝିଅର ବୟସ ବଢ଼ୁଚି। କିଛି ଗୋଟେ ବ୍ୟବସ୍ଥା କରିବାକୁ ହେବ ବୋଲି ସେ ଭାବୁଥିଲେ।

ଆଜିକାଲି ଯୁଗରେ ଗରୀବୀଟା ଗୋଟେ ବଡ଼ ଅଭିଶାପ। ଯିଏ ଗରୀବ, ତା' ପାଇଁ ଚାରି ଦିଗ ଅନ୍ଧାର। ତା' ପାଇଁ ସବୁ ଦୁଆର ବନ୍ଦ୍। ବାପା ଥିଲେ ଅବା କ'ଣ ହେଇଥାନ୍ତା। ତା' ବାପାର ବହୁତ୍ ଖ୍ୟାତି ଥିଲା। ବହୁତ୍ ଲୋକ ଘରକୁ ଆସୁଥିଲେ, ଆଶା, ଆଶ୍ୱାସନା ଦେଇଥିଲେ। ଛାତ୍ର, ଛାତ୍ରୀମାନଙ୍କର ଅଭିଭାବକମାନେ ବି ବିପଦ ଆପଦରେ ସାହାଯ୍ୟ କରୁଥିଲେ। ତା' ନହେଲେ କ'ଣ ମାତ୍ର, ତିନି ହଜାର ଟଙ୍କାରେ ସେ ଏ' ଘରଡିହ କିଣି ପାରିଥାନ୍ତେ।

କବିତାର ବାପା ଜଣେ ଆଦର୍ଶବାଦୀ ଶିକ୍ଷକ ଥିଲେ। ସେ ସବୁପ୍ରକାର ପିଲାଙ୍କୁ ଟିଉସନ୍ କରୁଥିଲେ। ସବୁ ପିଲାଙ୍କୁ ସମାନ୍ ଦୃଷ୍ଟିରେ ଦେଖୁଥିଲେ। ଜାତି ଫାତି ସେ ମାନୁ ନଥିଲେ। ପିଲେ ସେଥିପାଇଁ ଗୁରୁଜୀଙ୍କ ଘର ଛାଡ଼ି କେଉଁଆଡ଼େ ଯାଉନଥିଲେ। କବିତା ତାଙ୍କ ବାପାଙ୍କଠାରୁ ବହୁତ୍ କଥା ଶିଖିଚି।

ତାଙ୍କ ଘରକୁ ସବୁ ପର୍ବରେ ଏପରିକି ମୁସଲମାନ୍‌ମାନଙ୍କ ପର୍ବ ଇଦୁଲ୍ ଜୁହା ଓ ଇଦୁଲ୍‌ଫିତର୍‌ରେ ବିଭିନ୍ନ ପ୍ରକାର ଉପଢୌକନ ଘରକୁ ଆସେ। ସବୁ ଶ୍ରେଣୀର, ସବୁ ପ୍ରକାର ଛାତ୍ରଛାତ୍ରୀ ତାଙ୍କୁ ଭଲ ପାଉଥିଲେ। କବିତା ସଂସ୍କୃତ ଭଲ ପଢୁଥିଲା। ଗଣିତ ବି ତା'ର ଭଲ ହେଉଥିଲା। ବାପା ଚାଲିଗଲା ପରେ ସେ ଏଇ ଜ୍ଞାନକୁ ନେଇ ବାଟ ଚାଲୁଚି ଓ ଦି' ପଇସା ରୋଜଗାର କରୁଚି ଓ ମା'କୁ ପୋଷୁଚି ନିଜେ ପୋଷାକି ହେଉଚି।

କବିତାକୁ ଦେଖି ଯେ କେହିବି 'ମୋ'ର ଝିଅଟିଏ ହେଉ' ବୋଲି ଚାହିଁବେ। ଝିଅ ଘର ଚଳାଏ ସବୁ କାମ କରେ, ଘର ସଜାଏ। ଏବେ ଝିଅ ଏମିତି ଗୋଟେ ସଂପତ୍ତି ବାପ ମା'ଙ୍କର ଯା' ହୀରାଠାରୁ ଦୁର୍ମୁଲ୍ୟ। ତା' ସାଙ୍ଗ ମିନି ଅପା, ଦେଖୁନ, ଥର ଥର କରି ଦି'ଥର ଭ୍ରୁଣ ହତ୍ୟା ପାପରେ ଭାଗି ହେଇଚି। କେତେ ବୁଝେଇଚି ତା'କୁ କବିତା 'ମାରେନା ଲୋ ତା'କୁ ମିନି ଅପା, ପୁଅ, ଝୁଅ ଏମିତି ଭେଦଭାବ କ'ଣ? ଏତେ କଷ୍ଟରେ ପେଟରେ ଧରିଚୁ, ଆଜି ମାରିବାକୁ ଖାଲି ବସିଚୁ, ଛିଃ! ଯିଏ ବି ଯେତେ ବୁଝେଇଲେ, ମିନି ଅପା କ'ଣ ଶୁଣିଲା। ପିଲାଟିକୁ ମାରି ଦେଲା, ଏବେ ଭୋଗୁଚି। ଦି' ଦି' ଥର ଗର୍ଭ ନଷ୍ଟ ହେବା ପରେ ଏବେ ତାଙ୍କର କିଛି ପିଲା ପିଲି ନାଇଁ, ଦିନ ସାରା ଖାଲି ଭାବୁଚି ଆଉ ଭାବୁଚି।

ମିନି ଅପା କହେ, ଝୁଅଟି ଥିଲେ ଭଲ ହେଇଥାନ୍ତା। ଦେଖୁନ ଏଇ କବିତାକୁ। କେତେ କାମ ପୁଣି ଘରର। ଘରକୁ ସେ ଚଳାଉଚି। ବାହା ନହେଲେ କ'ଣ ହେଲା, ଆମେ ସବୁ ବାହା ହେଇ କ'ଣ ଖାଲି ତାଡ଼ି ପକେଇଚେ? ଅବଶ୍ୟ ସମାଜଟା ଏମିତି ଯେ, ବାପା ହେଉ, ଭାଇ ହେଉ, ଭିଣୋଇ ହେଉ, ସାଙ୍ଗ ହେଉ, ସୂର୍ଯ୍ୟ ବାନ୍ଧବ ହେଉ ମେଞ୍ଚେଡ଼ି ପୁଅ ପିଲାଟିଏ ସାଦର ମଧ୍ୟ ନିହାତି ଦରକାର। ନହେଲେ ଝିଅ ପିଲାଟେ କିଛି କରିପାରିବନି।

ତଥାପି ସାହି ପଡ଼ିଶାରେ ଟୁପୁର୍‌ଟାପର୍ ହୁଅନ୍ତି। ଆରେ, କବିତା ବିବାହ କରୁନୁ କାହିଁକି? ଆଉ କ'ଣ କା' ସାଂଗରେ ଫସିଚି, କହୁନି। ଏତେ ସୁନ୍ଦର, ଗୁଣର ଝୁଅଟା ତା'କୁ କ'ଣ ଭଲ ବର ମିଳୁନି? ଅବଶ୍ୟ ତା' ବାପା ନାଇଁ ସେଇ ଯୋଗୁ ତା' କଥା ବୁଝିବାକୁ କେହି ନାଇଁ।

ବହୁ କଷ୍ଟରେ ବି.ଏ. ଯାଏଁ ପଢ଼ିପାରିଲା ସେ। ଆଉ ପଢ଼ିବାକୁ ଭାବିଥିଲା ଯେ ହେଲାନି। ଅଭାବ ବାଟ ରୋକିଲା ସମସ୍ତେ କହିଥିଲେ ଆଉ ପଢୁ। କିଛି ହେଲାନି।

ନିଜ ବାହୁ ବଳରେ କେତେବାଟ ଆଉ ଚାଲିପାରନ୍ତା। ଏବେ କ'ଣ ବୁଢ଼ୀମା'ର ଦିହ ତେଣେ ତେଣେ ଖରାପ ହେଉଚି। ମାସକୁ ଔଷଧ ଖର୍ଚ୍ଚ ବି ବାଧୁଚି। ବାକି ଖାତାରେ ଲେଖା ହେଉଚି। ଦଶରାବେଳ ଆସିଲେ ଯେବେ ଦୋକାନର ଖାତା ନୂଆ ହୁଏ, ସେତେବେଳେ ମରି କଷ୍ଟକରି ସବୁ ଶୁଝିବାକୁ ପଡୁଚି। ଟିଉସନ୍‌ରୁ କେତେଟା ଟଙ୍କା ବା ସେ ପାଉଚି। ସବୁବେଳେ ଧାର କରଜରେ ତା'କୁ ବୁଡ଼ି ରହିବାକୁ ପଡୁଚି।

ଘରେ ଥିଲାବେଳେ ଶ୍ରୀକୃଷ୍ଣ ମୁହଁଙ୍କୁ ବେଳେବେଳେ ସେ ଚାହେଁ। ମନେ ମନେ ଠାକୁରଙ୍କୁ ନିଜର ଭଲ ମନ୍ଦର ସାଥୀ ବୋଲି ଭାବେ। ଅନେକ କଷ୍ଟରୁ ସେ ବି ରକ୍ଷା କରିଚନ୍ତି ତା'କୁ ଏଥରେ ସନ୍ଦେହ ନାହିଁ।

'କବିତା' ପରି ପଣ୍ଡିତେ ବି ମଧ୍ୟବିତ୍ତ ଘରୁ ଆସିଚନ୍ତି। ବଡ଼ ଭାଇ ମାଟ୍ରିକ୍ ପଢ଼ିବା ପରେ ମିଲିଟାରୀ ଚାଲିଗଲେ। ସେ ତ କିଛି ଦିନ ସଂସ୍କୃତ 'ଟୋଲ୍'ର ମାଷ୍ଟ୍ର ଥିଲେ। ଏବେ ଯଜମାନି କାମକୁ ବରି ନେଇଚନ୍ତି। ଠାକୁରଙ୍କ ସେବା ହିଁ ଏବେ ତାଙ୍କ ଚାକିରି। ତାଙ୍କ ବାପା ବି ସଂସ୍କୃତ ଟୋଲ୍‌ର ପଣ୍ଡିତ ଥିଲେ। ଭଲ ରୋଜଗାର ବି କରୁଥିଲେ। କିଛି ଭଲ ରୋଜଗାରମାନେ ତିନିଟି ପିଲାକୁ ମଣିଷ କରିବା ପାଇଁ ସେ ଟଙ୍କା ଠିକ୍ ଥିଲା। ବହୁତ୍ ଗୁଡ଼େ ପାଠ ପଢ଼େଇ ସ୍ୱପ୍ନ ଦେବାକୁ ସେ ସକ୍ଷମ ନଥିଲେ। ବଡ଼ଭାଇ ଫୌଜୀରେ ମିଶିବା ବେଳକୁ ବାପା ବେମାର ପଡ଼ିଲେ। ମା' ତ, ପିଲାବେଳୁ ଚାଲିଯାଇଚି। ବାପା ଥିଲେ ତାଙ୍କ ବାପା ଆଉ ମା' ଦି'ଟାଯାକ।

ହଉ, ମନରେ ଧୈର୍ଯ୍ୟ ରଖି ସଂସ୍କୃତ ଟୋଲ୍‌ରେ ଶିକ୍ଷକ ହେଲେ। ଅଳ୍ପ ଦିନରେ ଲୋକପ୍ରିୟତା ହାସଲ କଲା। ସେ ଘରେ ଟିଉସନ କରନ୍ତି ନାହିଁ। ସେହି ସ୍କୁଲ ସବୁ ପାଠ, ଯା'ର ଯା' ଦରକାର, ସାରିବାକୁ ଚେଷ୍ଟା କରନ୍ତି।

ତାଙ୍କର ଏଇ ସ୍ୱଭାବକୁ ପିଲାମାନଙ୍କର ଅଭିଭାବକମାନେ ବହୁତ୍ ପସନ୍ଦ କରନ୍ତି। ଗୋଟେ ଆଦର୍ଶ ଶିକ୍ଷକ ଭାବେ ତାଙ୍କର ନାଁ ବି ଅଛି।

ଫୁରସତ୍ ସମୟରେ, ଅନ୍ୟମାନେ ଯେତେବେଳେ ଭୋଜିଭାତ କରନ୍ତି, ସାଙ୍ଗ ସାଥୀ ସ' ତାସ୍ ଖେଳନ୍ତି, ପରସ୍ପର ବିରୁଦ୍ଧରେ କୁତ୍ସାରଟନା କରନ୍ତି, ଠିକ୍ ସେତେବେଳେ ସେ ରାମାୟଣ, ଭାଗବତ, କାଳିଦାସ, ଭବଭୂତିକୁ ପଢ଼ନ୍ତି। କାଳିଦାସ ତାଙ୍କର ପ୍ରିୟ। କାଳିଦାସଙ୍କର ଗୁଡ଼ାଏ ଲେଖା ଯା' ଯୌନ ଉଦ୍ରେକ କଥା ସେ ସେଗୁଡ଼ିକ ପଢ଼ି ଚିନ୍ତା କରନ୍ତି।

ଏମିତି ଦିନେ ବସୁ ବସୁ କ'ଣ ଗୋଟେ ଚିନ୍ତା କଲେ। ସାନ ଭାଇ ମୁନା ଯେମିତି ବି.ଏ. ପାସ୍ କଲେ। ତା'କୁ ବିଇଡ଼ି କରାଇବାକୁ ବସିଲେ। ଏବେ ତାଙ୍କ ଜାଗାରେ ତାଙ୍କ ସାନଭାଇ ଅବସ୍ଥାପିତ ବଡ଼ଭାଇ ଓ ସାନ ଭାଇ ବିବାହ କରିସାରିଚନ୍ତି ତାଙ୍କୁ ଛାଡ଼ି।

ସେ ଏବେ ଠାକୁରଙ୍କ ସେବାରେ। ସୃଷ୍ଟିର ଗରିବି ଯେ ହଟାନ୍ତି, ତାଙ୍କ ସେବାରେ, ସତ୍ୟ, ଶିବ, ସୁନ୍ଦରଙ୍କ ସେବାରେ, ଜଗତ୍‌ର ସ୍ୱାମୀ, ଯା' ପାଇଁ ଉଜାଗର ହେଉ ଜାଗର ଜଳେ ତାଙ୍କ ସେବାରେ, ପରମ ପ୍ରେମମୟ କାଳାସପତି, ଡମ୍ବରୁଧାରୀ ଭୋଳାନାଥଙ୍କ ସେବାରେ। 'ଦାରିଦ୍ର୍ୟ ଦୁଃଖ ଦହନାୟ ନମଃ ଶିବାୟ'। ତାଙ୍କର ପ୍ରିୟ ସ୍ତୋତ୍ର। ଏଇ ଶ୍ଳୋକ ଉଚ୍ଚାରଣରେ ସେ ଶିହରି ଉଠନ୍ତି। ତାଙ୍କ ପ୍ରତିଟି ପ୍ରେମରୂପ ବାଜି ଉଠେ। କାନ୍ଥବାଡ଼ ଚାରିଆଡ଼େ ଥରିଯାଏ। ଲାଗେ 'ଭୂତନାଥ' ଏବେ ଜାଗି ଉଠିବେ। ଚମତ୍‌କାର୍ ଶ୍ଳୋକ ଉଚ୍ଚାରଣ କରନ୍ତି ସେ। ଏବେ ସେ 'ପରମା' ନୁହେଁ ସ୍ୱାମୀ ପରମାନନ୍ଦ ସରସ୍ୱତୀ।

ମୁଣ୍ଡରେ ତୁଳସୀ, ବେଲପତ୍ର ଦେଇ ସେ ନିଜର ସଂସ୍କାର କରିଚନ୍ତି। କେବେ ବିବାହ କରିବେନି ବୋଲି ଶପଥ ନେଇଚନ୍ତି। ଶିବଙ୍କ ବିଷପିଆ ନେଳି କଣ୍ଠ ଆଉ ଅର୍ଦ୍ଧନୀଳିମା ନୟନ ଯୁଗଳ ଦେଖି ସେ ଅଭିଭୂତ ହେଇପଡ଼ନ୍ତି। କେତେ ନିଃସ୍ୱାର୍ଥପର, ଦୟାଳୁ ଏଇ ଠାକୁର ସମସ୍ତେ ପିଇଲେ ଅମୃତ, ସେ ପିଇଲେ ବିଷ। ସେ ସାଜିଲେ ନୀଳକଣ୍ଠ।

ମଉଜ୍‌ମସ୍ତିରେ ସମସ୍ତେ ଥିବେ, ବିପଦ ବେଳକୁ ଶିବଙ୍କୁ ଡାକିବେ। ଅପ୍‌ସରାଙ୍କ ନାଚରେ ମସ୍ତ୍ ହେଉଥିବା ଇନ୍ଦ୍ର ସବୁବେଳେ ବିପଦରେ ପଡ଼େ ଆଉ ଶିବଙ୍କ ଆଶ୍ରୟ ନିଏ। ସବୁଠୁ ଆଶ୍ଚର୍ଯ୍ୟ ଇଏ, ଅସୁରଙ୍କର ବି ଆରାଧ୍ୟ ଦେବତା।

ସ୍ୱାମୀ ପରମାନନ୍ଦ ସରସ୍ୱତୀ ଓରଫ୍ ପରମା ଜୀବନ୍‌ର ବହୁବାର ପ୍ରେମକୁ ଭେଟିଚି। ବାହାଘର ଗୋଟେଇବା ଚିନ୍ତା କରିନି ଯଦିଏ, ପୁରୁଷ ପାଇଁ ସ୍ତ୍ରୀ ଟିଏର ଆବଶ୍ୟକତା ଅଛି ବୋଲି ଜାଣିଚି। ଦୈହିକ ଆବଶ୍ୟକତା ନୁହେଁ, ମାନସିକ ଆବଶ୍ୟକତା ବି ରହିଚି।

ଗୋଟେ ମନ୍ଦିରର ପୂଜାରୀକୁ କିଏ ବା କାହିଁକି ଝିଅ ଦେବ। ମନକୁ ମନ ପରମାନନ୍ଦ ହସନ୍ତି ଆଉ ଚୁପ୍ ରୁହନ୍ତି। ବିଭିନ୍ନ ସମୟରେ ମନ୍ଦିରକୁ ଅନେକ ସୁମରେଇ ଆଣି ଅନେକ ସୁନ୍ଦରୀ ବି ଆସନ୍ତି। ସେମାନଙ୍କୁ ଦେଖି ଯେ ତାଙ୍କ ମନ ଶହିଲାନି ତା' ନୁହଁ, ହେଲେ କାଇଁ କହିବାକୁ କେମିତି କହିବେ?

ଏବେ ପରମାନନ୍ଦଙ୍କୁ ପଇଁଚାଳିଶ୍। ବେଳେବେଳେ ବ୍ୟର୍ଥତା ତାଙ୍କୁ ଗ୍ରାସୁଚି। ସେ ଭାବୁଚନ୍ତି ଏତେଗୁଡ଼ାଏ ଦିନ ସେ ଖାଲି ନଷ୍ଟ କରିଦେଲେ। ତାଙ୍କ ଜୀବନକୁ ବ୍ୟର୍ଥ କରିଦେଲେ।

ସକାଳ ହେଲେ, ସବୁବେଳେ ସେ, ବ୍ୟସ୍ତ ହୁଅନ୍ତି। ଏଇ ପୂଜାକର୍ମର ବ୍ୟସ୍ତତା ଭିତରେ ସେ ଜୀବନ୍‌ର ଦୁଃଖ ଭୁଲିବାକୁ ଚେଷ୍ଟା କରନ୍ତି। ସବୁକାମ ସରିବା ପରେ ଯେତେବେଳେ ଟିକେ ଫୁର୍‌ସତ୍ ପାଆନ୍ତି ସେତେବେଳେ ଦୁଃଖରେ ମ୍ରିୟମାଣ ହେଇଯାନ୍ତି। ଶିକାର ମୁହଁରେ ଅନାନ୍ତି। ତା'ପରେ ଶୋଇ ଯଡ଼ନ୍ତି।

କେତେ ଦୁଃଖଦ ଆଉ ଅଶ୍ଳୀଳ ଏଇ ମଣିଷର କାହାଣୀ? ଏଇ ମଣିଷକୁ ଦୁଃଖ, କଷ୍ଟ, ଏମିତି ଘେରି ରହିଚି ଯେ, ସେ କଣ ବୁଝିପାରିବେ। କେବଳ 'ଭାଗ୍ୟବାଦୀ' ହେଇ ଚାଲେ।

'କବିତା' ଆସିବା ପରେ ପଣ୍ଡିତଙ୍କ ଜୀବନର ନୂଆରଂଗ ଆଣିଚି। ଗାଏନେକ୍ ଓ ସିଲ୍‌ଭର୍‌ଟେଲ୍‌ର ପ୍ରେମ ତାଙ୍କ ହୃଦୟକୁ ଆନ୍ଦୋଳିତା କରିଚି। କବିତାକୁ ସେ ବାରବାର ସ୍ୱପ୍ନ ଦେଖୁଚନ୍ତି ଓ ପୂଜାର୍ଚ୍ଚନା ତାଙ୍କ ଗୋଳମାଳିଆ ହେଉଚି। ସେ ଠାକୁରଙ୍କୁ ବାରବାର କ୍ଷମା ମାଗିଚନ୍ତି।

ପାରାମାନେ ଇତିମଧ୍ୟରେ ପଣ୍ଡିତ ପରମାନନ୍ଦଙ୍କୁ ନିଜର ପହିଲା ନମ୍ବର୍ ଶତ୍ରୁ ବୋଲି ଭାବିଚନ୍ତି। ସେମାନେ ବୋଧେ ଏଇ ଭିତରେ କେବେନା କେବେ ତାଙ୍କ ବିରୋଧରେ ବିଦ୍ରୋହ କରିପାରନ୍ତି। ସେମାନଙ୍କର ନେତୃତ୍ୱ ନେଉଚି ଗାଏନେକ୍‌ର ଭଉଣୀ ହୋର୍‌ଫେସ୍। ସେ ସବୁ ପାରାମାନଙ୍କ ମଧ୍ୟରେ ପ୍ରଚାର କରିଦେଇଚି ଯେ ଏଇ ପାଦ୍ରୀ ହିଁ ତାଙ୍କ ଶତୃ। ମନ୍ଦିର ଆରମ୍ଭରୁ କେହି ଏଇ ପାରାମାନଙ୍କୁ ଗଉଡ଼ିବାକୁ ଚେଷ୍ଟା କରିନଥିଲେ, ଏମାନେ ଏଠି ନିରାପଦରେ ବୁଲୁଥିଲେ, ବସାବାନ୍ଧିଥିଲେ, ଖାଉଥିଲେ, ପିଉଥିଲେ, ସବୁ କରୁଥିଲେ, କେହି ଏମାନଂକୁ କହିବାକୁ ନଥିଲେ, ହେଲେ ପାରାମାନେ ଏଥିରେ ଡ଼ରିଯାଇନାହାନ୍ତି। କାହିଁକି ଡରିବେ। ସେମାନେ କାହାର ଖାଇଚନ୍ତି କି ପିଇଚନ୍ତି, ମନ୍ଦିରକୁ, ପରମାନନ୍ଦ ବସାଇ ନାହାନ୍ତି କି ସେଇ ମନ୍ଦିରର ଠାକୁର ତାଂକ ବାପ ସଂପତ୍ତି ନୁହତ। ମନ୍ଦିରର ଆସ୍ଥାନ ଜମେଇ ଭକ୍ତମାନଂକର ଦକ୍ଷିଣାରେ ସେ ଯେମିତି ପୋଷାକି ହୁଅନ୍ତି। ଏ ପକ୍ଷୀ ମାନେ ବି ସେମିତି ଦିଅନ୍ତି। ଆଜି ପରମାନନ୍ଦଙ୍କ ନିତିଦିନିଆ ଜୀବନ ଶୈଳୀ ଓ ଏମାନଂକ ଜୀଇଂବା ସୂଚୀ ସମାନ୍ ହେଇପାରେ। ଏଇମନ୍ଦିରରେ ପଣ୍ଡିତ ରହିବେ କି ଏପାରାମାନେ ରହିବେ, କେଜାଣି ସେ କଥା ଭଗବାନ୍ ଶିବଶଂକର କହିବେ।

ଆଜି ଉପରବେଳା ପାରାମାନେ ନିଜ ଭିତରେ କ'ଣ ସବୁ ଟୁପ୍‌ଟାପ୍ ଫୁଟ୍‌ଫାଟ୍ ହଉଥିଲେ, ସେମାନେ ଆଉ ପଣ୍ଡିତ ଓ କବିତାର ପ୍ରେମ ବିଷୟରେ କଥା ହଉନଥିଲେ ତ! ପଣ୍ଡିତଙ୍କ ମନରେ ସନ୍ଦେହ। ପଣ୍ଡିତେ ଯେମିତି ଏ କଥା ଭାବିଚନ୍ତି ରାଗିଗଲେ, ଗୋଟେ ବଡ଼ ବାଡ଼ି ଧରି ଜୋର୍‌ରେ ମନ୍ଦିର ବାଡ଼ାକୁ ବାଡ଼େଇବାକୁ ଲାଗିଲେ ପାରାମାନେ ଫୁର୍‌କରି ଉଡ଼ିଯାଉଥାନ୍ତି ଆଉ ପୁଣି ବସୁଥାନ୍ତି। ସେମାନେ ପଣ୍ଡିତଙ୍କ ସହ ବୋଧେ ଭିତରେ ଭିତରେ ଯୁଦ୍ଧ ଘୋଷଣା କରିସାରିଲେଣି ହୋର୍‌ଫେସ୍ ଚକ୍ରକାରରେ ଉଡି ପଣ୍ଡିତ ଙ୍କ କାନ ପାଖଦେଇ ଭାଏଁ କରି ଉଡିଲା, ପଣ୍ଡିତେ ଚମ୍‌କି ଗଲେ, ଦି'ଥର ଏପଟ ସେପଟ ଉଡ଼ି ପାରାଟି ଜୋର୍‌ରେ ଘୁମ୍‌ରିଲା ଓ ସାଥୀ ମାନଂକୁ ଡାକିଲା ସମସ୍ତେ ଧାଡ଼ିଧାଡ଼ି ହେଇ ସାଇଜହୋଇ ଓ ମନ୍ଦିରର କାରୁକାର୍ଯ୍ୟ ହେଇଥିବା ଖୋପରେ ବସିବାକୁ ଲାଗିଲେ, ଏବଂ ସେମାନଂକ ନିଜସ୍ୱ ଢ଼ଙ୍ଗରେ ଘୁମ୍‌ରି ଅଢ଼ାକହିବାକୁ ଲାଗିଲେ।

ତୀର ସୁଦନପୁର ଗାଁରେ ଏମିତି ଅଭାବନୀୟ ଘଟଣା କେବେ ଘଟିନଥିଲା। ପାରାମାନଂକର ମେଳି ଦେଖି ମନେମନେ ହସିଲେ ମଧ୍ୟ ପଣ୍ଡିତଂକ ମନରେ ରାଗ ପଶିଗଲା, ସେ ଏସବୁ ନର୍କର ଦୂତମାନଂକୁ ଘଉଡ଼ିବେ ବୋଲି ମନରେ ଶପଥ ନେଲେ।

ଏଇ ପାରାମାନେ ଏଠି ଏମିତି ଉତ୍ପାତ ଆରମ୍ଭ କଲେ ଯେ ପଣ୍ଡିତେ ଓ ଭକ୍ତମାନେ ଆଉ ପ୍ରାର୍ଥନା କରିବାକୁ ମନ ଦେଇପାରିଲେ ନାହିଁ। ସକାଳ ପ୍ରାର୍ଥନା, ସନ୍ଧ୍ୟା ପ୍ରାର୍ଥନା ବି ସେମାନେ ଭଲରେ କରିପାରୁନାହାନ୍ତି, ସକାଳେ ଦେଖିଲାବେଳକୁ ପାରାମାନଂକ ପର, ମଇଳା ପଡ଼ିଥିବ, ହେଲେ ସେମାନେ ମଇଳା କରିଥିବେ ପଣ୍ଡିତେ ତାଂକ ଲୋକ ମାନଂକୁ ନପାଇ ସଫାକରିଥିବେ, ପୁଣି ସେମାନେ ମଇଳା କରିଦେବେ, କେତେ ସହିବେ ପଣ୍ଡିତେ, ଏ ନୀରିହ ପକ୍ଷୀ ମାନଂକୁ ନୀରିହ ନୀରିହ କହି କେତେ ଛାଡ଼ିଦେଲେ କହୁନା ଯେତେ ଛାଡ଼ିଦଉଚନ୍ତି ତାଂକ ମୁହଁ ସେତେ ତ ବଢୁଚି। ସେମାନେ ସେତେ ଉତ୍ପାତ କରୁଚନ୍ତି।

ପଣ୍ଡିତଂକ ବ୍ୟସ୍ତତା ତାଂକ ଶିଷ୍ୟ ଓ ଭକ୍ତମାନେ ବୁଝିଲେବି ପାରାମାନେ ବୁଝୁନଥାନ୍ତି? କିଏ ମିଳେଇବ ପଣ୍ଡିତଂକ ଅବବୋଧ ସହ ଏ' ଅବୋଧ ପକ୍ଷୀଙ୍କ ଅବବୋଧ, କିଏ?

ଭକ୍ତମାନେ ଏଥର ଠିକ୍ କଲେ ପଣ୍ଡିତଂକୁ ସାକ୍ଷ୍ୟମ ହେଲେ, ଏ' ପକ୍ଷୀଗୁଡ଼ାକ ମନ୍ଦିର ପରିବେଶକୁ ପୁଣି ଦୂଷିତ କରିଦେବେ, ସେମାନେ ସମସ୍ତେ ଲମ୍ବା ବାଡ଼ି ଧରି ପାରାମାନଂକ ଘରେ ଭୀଷଣ ଆକ୍ରମଣ କରିବାକୁ ଲାଗିଲେ, ଦି'ଚାରିଟା ପର ବି ଛିଡ଼ି ପଡ଼ିଲା, ହୋର୍‌ଫେସ୍ ନେତୃତ୍ୱରେ ପାରାମାନଂକ ବିଦ୍ରୋହ ତୀବ୍ର ହେଲା ପାରାମାନେ କ୍ରୋଧରେ ଘୁମ୍ରି ମନ୍ଦିର ପରିସରକୁ ଘୋ'ଘା' କରିବାକୁ ଲାଗିଲେ, ସେମାନେ ମନେମନେ ଶପଥ ନେଉଥିଲେ ଯେ ପଣ୍ଡିତଂକ ମୁହଁରେ ଦବାଇ ଦେବେ, ପଣ୍ଡିତେ ଓ ଭକ୍ତମାନେ ବି ନଛୋଡ଼ବନ୍ଧା, ସେମାନେ ଶପଥ ନେଲେ ଯେ ଶିବରାତ୍ରୀ ଆଉ ଦଶଦିନ ରହିଲା, ଏଇ ଭିତରେ ସେମାନେ ଏ' ପାରାମାନଂକୁ ଘଉଡ଼ିବେ, ତେଣିକି କିଛି ନୀରିହ ପାରା ମଲେ ମରିବେ ପଛକେ,

ପାରାମାନଂକୁ ମାରି ଘଉଡ଼ିବା ପାଇଁ କେବେତ 'କବିତା' ଚାହୁଁନଥିଲା, ନୀରିହ ପକ୍ଷୀ ଗୁଡ଼ାକୁ ମାରିଦେଲେ ଆଉ କ'ଣ ହବଯେ। ସେ ପଣ୍ଡିତେଙ୍କୁ ବୁଝାଇଲେ, କବିତାଙ୍କ ଯୁକ୍ତିକୁ ପସନ୍ଦ କଲେ ପଣ୍ଡିତେ, କିନ୍ତୁ ଆଗତ ଯେମିତି ଶିବରାତ୍ରୀରେ କିଛି ଦୁର୍ଘଟଣା ନହୁଏ ସେଇତିପାଇଁ ଏମିତି ଯନ୍ତ୍ର ଅବଲମ୍ବନ କରିବାକୁ ହେବ ବୋଲି ସେ କହିବାକୁ ବୁଝେଇବାକୁ ଲାଗିଲେ, ଶିବରାତ୍ରୀ ଯାଏଁ ଏମାନଂକ ଦୌରାତ୍ମ୍ୟରୁ ବଞ୍ଚିବାକୁ ପଡ଼ିବ ବୋଲି ସେ କହିଲେ।

ଏପଟେ ପାରାମାନଂକ ଦୌରାତ୍ମ୍ୟରେ ବିବ୍ରତ ପରମାନନ୍ଦ। ତାଂକ ସହ କବିତାର ସଂପର୍କ କଥା ପ୍ରଚାର ହେବାପରେ ବ୍ୟଥିତ ହେଲେ। ଶିବରାତ୍ରୀ ପାଇଁ ଆୟୋଜନ କରିବେ କ'ଣ ଗାଲରେ ହାତ ଦେଇ ବସି ପଡୁଥିଲେ, ଭକ୍ତମାନଂକ ସହ ଠିକ୍‌ରେ କଥାବାର୍ତ୍ତା ହେଇପାରୁନଥିଲେ, ଭଗବାନକ ଉପାସନାରେ ବି ଖିଲାପ ହେଉଥିଲା, ଏକଥା ତାଙ୍କୁ ବି ଭଲଲାଗୁନଥାଏ, ହେଲେ କ'ଣ କରିବେ ଭଗବାନଂକ ପୂଜାତ କରିବାକୁ ପଡ଼ିବ।

ପାରାମାନେ ସେମିତି ଜିଦ୍ ଧରି ପଣ୍ଡିତଂକ ସହ ଲାଗିଥାନ୍ତି, କବିତା ସହ ତାଂକ ସଂପର୍କ ଗାଁରେ ଆଲୋଚନା ହେଉଥାଏ। କବିତା ଥରେ ଦି'ଥର ତାଂକର ପାଖରେ କାନ୍ଦିଚି ଆଉ ସେ ତାକୁ ବୁଝେଇଚନ୍ତି। ଲୋକେ ତ ବହୁତ କଥା କହନ୍ତି, ଲୋକଂକ କାମ ହେଲା କହିବା, ଏୟା କହି ସେ କବିକୁ ବୁଝାନ୍ତି ଆଉ ଭଗବାନ୍ ଶଂକରଂକ ଉପରେ ଭରସା ରଖିବାକୁ କହନ୍ତି, ସେ କହନ୍ତି 'କବିତା' ତୁମେ ପାର୍ବତୀଙ୍କ ପରି ପବିତ୍ର, ଜମାରୁ ତୁମେ ପତିତା ନୁହଁ, କବିତା ନିରୁତ୍ତର ରହେ, ଖାଲି ଲୁହ ଗଡ଼ାଏ, କାନ୍ଦିଲେ ଆଖି ଓ ମନ ପରିଷ୍କାର ହେଇଯାଏ, ସେ କାନ୍ଦୁ, ପଣ୍ଡିତେ ବୁଝାନ୍ତି, ସୁନା ଝୁଅଟିପରି କବିତା ଚାଲିଯାଏ।

କବିତା ନିଜେ ଭାବେ, ସେ ସତରେ 'କବିତା' ପରି ପବିତ୍ର। ତା' ବାହାଘର ଠିକ୍ ହେଉଥିଲା ତା' ବାପା ମରିବା ପୂର୍ବରୁ, ହେଲେ ଯୌତୁକ ଅର୍ଥ ଦେଇନପାରିବାରୁ ପୁଅଘର, ନିର୍ବନ୍ଧ ଲଂଘିତଗଲେ, ମଙ୍ଗୁଳା କନ୍ୟା ହେଇ ପଡ଼ିରହିଲା କବିତା। ପରେ ସେ ଗୋଟେ ଚାଟଶାଳୀରେ ଶିକ୍ଷୟିତ୍ରୀ ହେଲା, କୁନିକୁନି ପିଲାଂକ ମେଳରେ ସମୟ କଟଉଥିଲେ, କବିତା ଟିଉସନ୍ କଲା, ପଇସା ବି ଭଲ ରୋଜଗାର କଲା ଅନେକ ଆସିଲେ ବିବାହ ପାଇଁ, ସେ ପତ୍ୟାଖ୍ୟାନ କଲା, ସେ ଚିନ୍ତାକରୁଥିଲା ଯେ ସେ ସ୍ୱୟଂସଂପୂର୍ଣ୍ଣ ତା'ର ଜୀଇଁବା ପାଇଁ କୌଣସି ପୁରୁଷର ଦସ୍ତଖତ ଦରକାର ନାଇଁ। ଯୌବନ୍‌ର ଦସ୍ତଖତ୍ ତା' ଦେହରେ ଯେ ଦୁଆର ଉଠେଇନି ତା' ନୁହଁ,। ହେଲେ, ସେ, ସେ କଥା ଏଡ଼େଇ ଯାଇଚି।

ଝୁଅପିଲା ବାହାନହେଇ ଘରେ ରହିବାରେ କେତେଲୋକ କେତେ କଥା କହିବେ, ଘରକୁ ଯିଏ ବୁଲିଆସିଲା ତା' ସହ ଯୋଡ଼ି ଅପପ୍ରଚାର କଲା, କିଛି ବେକାର, ବାଲୁଙ୍ଗା ପିଲା ତା' ସହ ସଂପର୍କ ଯୋଡ଼ିବାକୁ ଚେଷ୍ଟାକରି ବିଫଳ ହେଲେ କୁନିକୁନି ପିଲା, ଜୀବଜନ୍ତୁ ତା'ର ପ୍ରିୟ, ସେ ଆମିଷ ଖାଏନା ଜୀବଜନ୍ତୁଙ୍କୁ ଅତ୍ୟାଚାର ଦେଖିଲେ ସହିପାରେନା।

ସେଇଦିନୁ ଏଇ ପାରାମାନେ ତା'ର ପରମ ପ୍ରିୟ। ଯେମିତି ସେ ଖୁଦ ଢାଳିଦିଏ। କୁଆଡୁ ଗାଏନେକ୍‌ର ଗ୍ରୁପ୍, ଚାଲିଆସନ୍ତି, ମହାଆନନ୍ଦରେ ଖାଇଯାନ୍ତି ହୋର୍‌ଫେସ୍

ତା'କୁ ବହୁତ ଭଲପାଏ, କେତେଥର କବିତା ହୋର୍‌ଫେସ୍‌କୁ ତା' ପାପୁଲିରେ ଧରି ଆଉଂସିଚି -ଡାକିଛି, ଆହା। ଏବଂ ନୀରିହ ପକ୍ଷୀଟା।

ପଣ୍ଡିତେ ଭାବନ୍ତି ଏ' କବିତା ପାରାମାନଂକଠୁ ବି ଆହୁରି ନୀରିହ, ତା' ଚାହାଣୀ ଆହୁରି ମାସୁମ୍‌। ଆଉ ସବୁବେଳେ ଢ଼ଳଢ଼ଳ। ମୁହଁଟି ଯେମିତି ପଦ୍ମ। ନିଟୋଳ ତନୁଲତା। କବିତା ଯେମିତି ଗୋରୀ ଅପସରୀ ସ୍ୱର୍ଗର, ଅଭିଶାପ୍ ପାଇ ନର୍କକୁ ଓହ୍ଲେଇଆସିଚି।

ତା' ବିଷୟରେ ଖରାପକଥା ଚିନ୍ତାକରିବା ହିଁ ପାପ ପଣ୍ଡିତ ପରମାନନ୍ଦ ଭାବିଲେ। ହୁଅତେ ଦିନେ ନଦେଖିଲେ ତାଂକୁ ସେଦିନ ଭଲ ଲାଗେ ନାହିଁ ଅବା ଠାକୁରଙ୍କୁ ଅନ୍ନ ବ୍ୟଞ୍ଜନ ରୁହେ ନାହିଁ।

ସେଦିନ ସେ ଠିକ୍‌କଲା ପଣ୍ଡିତେକୁ ସବୁକଥା କହିବ ଯେ, ସେ ଠାକୁର, କବିତା ଗୋଟେ ସାଧାରଣ ଦୁଃଖୀ ଝିଅ। ତାଙ୍କୁ ପାଇବା ତା' ଭାଗ୍ୟରେ ନାହିଁ। ବରଂ ସ୍ୱାମୀଜୀଙ୍କର ବଦ୍‌ନାମ୍ ହବ। ବ୍ରହ୍ମଚର୍ଯ୍ୟରେ ଆଞ୍ଚ ଆସିବ। ଲୋକ ବିଶ୍ୱାସ ଖଣ୍ଡବିଖଣ୍ଡିତ ହେବ। ଆଗକୁ ଶିବରାତ୍ରୀ, ବିଭିନ୍ନ ପ୍ରକାରର ଅସୁବିଧା ଆଉ ଗଣ୍ଡଗୋଳ ହେଇପାରେ, ଅବଶ୍ୟ କବିତା ଜାଣେ ପଣ୍ଡିତେ ତାକୁ କେତେ ଭଲପାଆନ୍ତି। ଏକଥା ଶୁଣି ମର୍ମାହତ ହେବେ, ଅଭିଶାପ ଦେବେ, ସଂପର୍କ ଏତେବାଟ ବଢ଼ିଗଲା ପରେ କେମିତି କହିବ ବୋଲି ଠିକ୍ କଲା।

ଏବେ ଗାଁଟା ସାରା ଟୁପୁରୁଟାପର, ଫୁସୁରୁଫାସର। ନା ପରମାନନ୍ଦ ଠିକ୍‌ଭାବେ ପୂଜା କରିପାରୁଚନ୍ତି, ନା କବିତା ଠିକ୍‌ଭାବେ ପୋଖରୀକୂଳକୁ ଯାଇପାରୁଚି, ଲୋକେ ସାହସକରି ପଣ୍ଡିତଂକୁ କହିନପାରିଲେ ବି କବିତାକୁ ଟାହିଟାପରା କରନ୍ତି। କ'ଣ କହି ବୁଝେଇବେ ତାଙ୍କୁ, କବିତା ଖାଲି କାନ୍ଦିବା ଛଡା ଆଉକିଛି କରିପାରୁନଥାଏ।

ଦି'ଦିନ ହେଲା ଏଣେ ଗାଏନେକ୍ କୁଆଡେଯାଇଚି ଯେ ପତାନାହିଁ। ରାତିଦିନ ହୋର୍‌ଫେସ୍ ଘୁମୁରୁଚି ଆଉ ଖୋଜୁଚି। ସିଲଭର୍‌ଟେଲ୍ ଖାଲି ନୀବରବରେ ଲୁହ ଗଡ଼ଉଚି। କିଛି ଖାଉନି, ପିଉନି ଖାଲି ଖୋଜୁଚି, ସେଦିନ କବିତା ଯେତେବେଳେ ଖୁଦଭଜା ବୁଣିଦେଲା, ସମସ୍ତେ ଆସିଲେ ହେଲେଏ ସିଲଭର୍‌ଟେଲ୍ ଆସିନଥିଲା, ଗାଏନେକ୍‌ର ବିରହରେ ସେ ଦୁଃଖୀ। ତେଣୁ ଆସିଲା ନାହିଁ। ସିଲଭର୍‌ଟେଲକୁ ବୁଝାଇ ଶୁଝାଇ ଆଣିବାକୁ କେତେ ଚେଷ୍ଟାକଲା ହୋର୍‌ଫେସ୍। କିନ୍ତୁ ହେଲାନାହିଁ। ହୋର୍‌ଫେସ୍ ଶେଷରେ କବିତା ପାଖକୁ ଆସି ପାପୁଲିରେ ବସିଲା ଆଉ ଘୁମ୍‌ରିଲା, କବିତା ଦୁଃଖ କଲା କୁଆଡେ ଗଲା ଗାଏନେକ୍।

ଗାଏନେକ୍ ହଠାତ୍ ଖଣ୍ଡିଆଭୂତପରି ପହଞ୍ଚିଲା। ଦୀର୍ଘ ଦି'ଦିନ ପରେ ଆସିଲା ବିଚରା ତା'ପରେ ଆରମ୍ଭ ହେଲା କନ୍ଦା, କଟା, ବାଡ଼ିଆ ପିଟା, ରଖାରଖି, ସବୁ, ଆଜ

ବହୁତ୍ ଘୁମ୍‌ରା ପରେ ସବୁ ଶୂନଶାନ୍। ପାରାମାନେ ଚୁପ୍‌ଚାପ୍, ପଣ୍ଡିତ ପରମାନନ୍ଦ ବି ଚୁପ୍‌ଚାପ୍, କବିତା ତା'ଘରେ ତକିଆ ମାଡି ଶୋଇଥାଏ ଚୁପ୍‌ଚାପ୍। ଗୋଟେ କୋଳହଳ ବଦଳରେ ଆଜି ଯେମିତି ଚାରିଆଡେ ହଳାହଳ ଚରିଯାଇଚି। ସବୁ ଆଡ଼େ ଆଜି ନିସ୍ତବ୍‌ଦତା।

କୋଉଠି ଏଯାଏଁ ଥିଲା ଗାଏନେକ୍। ଆଉ କେଉଁ ମାଇପାରାର ବାହୁବନ୍ଧନ ଭିତରେ ନଥିଲା ତ'! କି କୋଉଠି ବ୍ୟାଧ ଜାଲ ଫେଲେଇ ଥିଲା, ସେ ପଡ଼ିଯାଇଥିଲା କିବା ବାଟ ଭୁଲିଗଲା କୁହ ବିଚରାପକ୍ଷୀ। କୁଆଡ଼େ ଯାଇଥିଲା, କାହିଁ ଆଇଲା, କୁହ, କୋଉ ଦେଶରେ ଥିଲା, କ'ଣ ଖାଉଥିଲା, ପିଉଥିଲା କେଜାଣି ସିଲଭର୍‌ଟେଲ୍ ତା' ଅପେକ୍ଷାରେ ଲୁହ ପିଇପିଇ ଜୀଇଁଥିଲା ପରି ମନେହେଇଥିଲା, ଆଜି ଦି'ପକ୍ଷୀଙ୍କ ମିଳନ ହେଇଛି ଦି'ଦିନ ପରେ ହେଲେବି, ଚାରିଆଡେ ନିସ୍ତବଦ୍‌ତା ଥିଲେବି ଦୁଇପକ୍ଷୀଙ୍କର ଘୁମ୍‌ରା ମଝିରେ ମଝିରେ ଶୁଭୁଥାଏ।

ପଣ୍ଡିତଂକ ମାନସିକତାକୁ ବିପଦ ଗ୍ରାସକଲାପରେ ପାରା ସମାଜରେ ବି ବିପଦ ଦେଖାଦେଇଚି। ଆଜି ସକାଳୁ ଦି'ଜଣ ପାରାଙ୍କ ପର ମନ୍ଦିର ଯିବାବାଟରେ ପଡ଼ିଚି। କିଏ ବୋଧେ ଦି'ଟା ପାରାଙ୍କୁ ମାରି ଖାଇଦେଇଚି ପାରାମାନେ ଏଠି ସେଠି ଘୁମୁରୁଚନ୍ତି, କବିତା ଆଜି ମନଦୁଃଖରେ ଡ଼େରିରେ ଗାଧୋଇଚି। ପଣ୍ଡିତେବି ମନଦୁଃଖ କରିଚନ୍ତି, ଗାଏନେକ୍ ଯୋଉ ଦି'ଦିନ ଗାଏବ୍ ହେଇଗଲା ସେଇଦିନ ଏମିତି ବିପଦ ଘୋଟିଚି।

ପଣ୍ଡିତଂକ କବିତା ସହ ପ୍ରେମ କିବା ଅନ୍ୟ କୋଉ ପାପ ପାଇଁ ଏମିତି ଘଟୁଚି ବୋଲି ଗ୍ରାମବାସୀ କହୁଚନ୍ତି, ମନ୍ଦିର ପରିସର ଉପରେ କା'ର ବିଷଦୃଷ୍ଟି ପଡୁଚି କେଜାଣି, ଭାବିଲେ ଦୁଃଖ ଲାଗୁଚି।

ଆଜି ଗାଏନେକ୍, ସିଲଭର୍‌ଟେଲ୍ ଓ ସମଗ୍ର ମନ୍ଦିରର ପାରାସମାଜ ସକାଳୁ କିଛି ଖାଇନାହାନ୍ତି। ଦୁଇଟି ପାରା ମରିଯିବାପରେ ସବୁଆଡେ ଦୁଃଖର ଛାୟା ଖେଳିଯାଇଛି। ଆଜି କବିତା ଖୁଦ ଆଉ ମୁଢ଼ି ବୁଣିଥିଲେବି କେହି ପାରା ଖାଇବାକୁ ଯାଇନଥିଲେ।

ଗାଁ ଯାକ ଚୁପ୍‌ଚାପ୍ ହଉଥିଲେ ଯେ କବିତା ସହ ସ୍ୱାମୀଜୀଙ୍କ ସଂପର୍କ ହେବାରୁ ଏମିତି ଅଘଟଣା ଘଟିଲା ସେମାନେ ଭୟରେ ସ୍ୱାମୀଜୀଙ୍କୁ କିଛି କହିନପାରିଲେବି କବିତାର ଘର ପ୍ରତି କଟୁମନ୍ତବ୍ୟ ଦେଇଥିଲେ। ତଥାପି କେହି କେହି ଗୁରୁଜନ, ମୁଖିଆ ସ୍ଥାନୀୟ ଲୋକ ଶିବରାତ୍ରୀ ପୂର୍ବରୁ ଏ' ସମସ୍ୟାର ସମାଧାନ କରିବା ଉଚିତ ବୋଲି ମନ୍ତବ୍ୟ ଦେଇଥିଲେ, ସେମାନେ କଥା ହେଲେ ଯେ ଏଥର ପଞ୍ଚାୟତରେ ସେମାନେ ଏକଥାର ଗୋଟେ ସମାଧାନ କରିବେ। ମନ୍ଦିର ପରିସରର ପବିତ୍ରତା ସେମାନେ ରକ୍ଷାକରିବେ ବୋଲି ମନସ୍ଥ କଲେ।

ଗାଁ ମୁଖିଆ ଓ ତାଂକର ଦୁଇଚାରିଜଣ ସହକର୍ମୀ ମନ୍ଦିରକୁ ଗଲେ, ସ୍ୱାମୀଜୀଙ୍କୁ ଦେଖେ ହେଲେ ଓ ଶିବରାତ୍ରୀ ପାଳନ ବିଷୟରେ କଥାବାର୍ତ୍ତା ହେଲେ, ପାରାମାନଂକ ଉତ୍ପାତ ବିଷୟରେ କଥା ପଡ଼ିଲା। ସେମାନଂକୁ ଘଉଡ଼ିବାକୁ କ'ଣ କରାଯିବ ସେଇବିଷୟରେ କଥା ପଡ଼ିଲା, ଗାଁ ମୁଖିଆ ସାହସର ସହ କହିଲେ ଆଛା, ଆପଣଂକ ନିର୍ମଳ ଭାବମୂର୍ତ୍ତି ବିଷୟରେ ଆମର ସନ୍ଦେହ ନାହିଁ। ହେଲେ ଏ' ତା ଆଖିଟା ଆପଣଂକ ଉପରେ ବିଷ ଦୃଷ୍ଟି ପକାଉଚି, ତେଣୁ ସବୁଆଡ଼େ ଶାନ୍ତି ବ୍ୟାହତ ହେଉଚି ଏଥର ପଞ୍ଚାୟତରେ ସେ ପାରମାନକୁ ଗାଁରୁ ତଡ଼ିଦିଆଯିବ ବୋଲି ନିଷ୍ପତ୍ତି ନିଆଯାଇଚି। ଆପଣ ଚିନ୍ତାକରନ୍ତୁନି ମ, ଆପଣଂକୁ କିଛି ହବନାହିଁ ଆମେ ସବୁ ଅଛୁ, ଆପଣଂକୁ ପଞ୍ଚାୟତ କୁ ଯିବାକୁ ପଡ଼ିବ ନାହିଁ।

ସାମାନ୍ୟ ଟିକିଏ ଦୋଷରୁ ଆଜିଯେ କି ଅଘଟଣା ଘଟିବାକୁ ଯାଉଚି, ପରମାନନ୍ଦ ଭାବିଲେ, ସେ ଭାବିଲେ କିଛିଗୋଟେ ଘଟିବା ପୂର୍ବରୁ ସେ କିଛି ବ୍ୟବସ୍ଥା କରିବେ। କବିତାଙ୍କୁ ଭେଟିବେ ଦଶହଜାର ଟଂକା ତାକୁ ସାହାଯ୍ୟ ଦେବେ ଓ ମା'କୁ ଧରି ଆଉ କେଉଁଜାଗାରେ ଖୁସିରେ ରହିବାକୁ ଅନୁରୋଧ କରିବେ, ସେ ଜାଣନ୍ତି ନାହିଁ ତା' କଥା ଶୁଣି କବିତା କ'ଣ ଭାବିବ ଆଉ କ'ଣ କହିବ? ହେଲେ ତାଙ୍କ ପାଖରେ ଆଉ କିଛି ଉପାୟ ନାହିଁ, ସେ କ'ଣ କରିବେ? ସେ ଠିକ କଲେ ଯେ ଶିବରାତ୍ରୀ ପୂର୍ବରୁ ଏ'କଥାର ସମାଧାନ ନହେଲେ ବହୁତ୍ ଗଣ୍ଡଗୋଳିଆ ହେବ।

କବିତା ଆଉ ତା'ର ମା' ଏ କଥା ଜାଣିଲେ, ପଡ଼ିଶା ଘର ଚେମିଅପା ବି ଏ' କଥା କହୁଥିଲା ବୁଝିଲୁନା ମା' କବିତା, ତୋ'ର ଆଉ ପଣ୍ଡିତେଙ୍କ ସଂପର୍କରେ ଏବେ ସଭିଏଁ ଫୁସୁରୁଫାସର ହେଉଚନ୍ତି, ମୁଖିଆ କହୁଥିଲେ ତୋତେ ପଞ୍ଚାୟତକୁ ଡକେଇ ଯା' କିଛି ଫଇସଲା କରିବେ।

କବିତା କିଛି କହିପାରୁନଥିଲା, ଭାବୁଥିଲା ସବୁ ତା' ଭାଗ୍ୟ। ତା' ପାଇଁ ପଣ୍ଡିତେବି ଆଜି ହଇରାଣ ହେଇପାରନ୍ତି, ସେ ଠିକ୍ କଲା ପଞ୍ଚାୟତ ପୂର୍ବରୁ ସେ ଏ' ଗାଁ ଛାଡ଼ି ଚାଲିଯିବ। ବାହାରେ କୋଉଠି ରହି କିଛି କାମଧନ୍ଦା କରିବ, ଆଗାମୀ ଦିନରେ କିଛି ଗୋଟେ ଘଟିପାରେ ବୋଲି ଭାବି ସେ ନିଜର ଆସବାବପତ୍ର ଲୁଗାପଟା ସଜାଇବାକୁ ଲାଗିଲା, ଭାବିଲା ଏଇ ଭିତରେ ସମୟହେଲେ ପଣ୍ଡିତେକୁ ଏ'କଥା କହିବ।

ପାରାମାନଂକ ଭିତରେ ଭାଳେଣୀ ପଡ଼ିଗଲା, ଏମିତି ଗୋଟାକୁ ଗୋଟା ପାରା ଯଦି ମରିବେ, ଏଠି ରହି ଲାଭ କ'ଣ, ସେମାନେ ଭାବିଲେ ଏ' ପଣ୍ଡିତ ପରମାନନ୍ଦ ଏଇ ଭିଆଣ ଘଟାଇଚି, ସଭିଙ୍କର ରାଗ ପଣ୍ଡିତେଙ୍କ ଉପରେ ପଡ଼ିଲା। ପାରାମାନେ ଭାବିଲେ ଏଇ କେତେଦିନ ସମୂହଭାବେ ରହିବେ, ବୁଲିବୁଲି ରହିବେ, ପରେ ଜାଗା ଠିକ୍ କରି ଅନ୍ୟ କେଉଁସ୍ଥାନକୁ ଚାଲିଯିବେ।

ପଣ୍ଡିତେ ଭାବୁଥିଲେ, ଏସବୁ କ'ଣ ଘଟିଗଲା, କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ଦେଖାହେଲା କବିତା ସହ ସେଇଥିରୁହିଁ ପ୍ରେମ। ତା'ର ଭୟଂକର ପରିଣତି ଆଜି ଘଟିବାକୁ ଯାଉଚି। ପରମାନନ୍ଦଙ୍କର ନିଜଘରେ ଘୃଣା ଆସିଲା ସେ ଭାବିଲେ ଏ' ପାରାମାନଂକର ଦେହମିଳନ ଦେଖିଦେଇ ତାଂକ ମନବି ପାପଗ୍ରସ୍ତ ହେଇଗଲା ଏଥିରୁ ମୁକ୍ତି ନାହିଁ।

ଆହାର-ନିଦ୍ରା-ଭୟ-ମୈଥୁନ ସବୁ ପ୍ରାଣୀଙ୍କର ସମାନ। କେବଳ ମଣିଷର ଅଲଗା ପ୍ରକାରର ଚିନ୍ତନ-ମନନର ଶକ୍ତି ରହିଚି। ସେଇଯୋଗୁ ସେ ସୃଷ୍ଟିର ଶ୍ରେଷ୍ଠ ଜୀବ, ସେଇଥିପାଇଁ ସେ ଅନ୍ୟ ପ୍ରାଣୀଠୁ ଅଲଗା, ମଣିଷଠୁ ପଶୁ, ପକ୍ଷୀ ସବୁ ଗୁଣ, ଆଦର୍ଶ ଶିଖିବା କଥା, ଅଥଚ ପଣ୍ଡିତେ ପାରାମନଂକର ମୈଥୁନ ଦେଖି କାମନା ଜର୍ଜରିତ, ମନେମନେ ମର୍ମରିତ ହେଲେ, ତାଙ୍କର ଏହି ସୁନ୍ଦରୀ ସହିତ ଦେଖାହେଲା ସେ ଏତେବାଟ ଆଗେଇଗଲେ ବୋଲି ହୁଏତ ତାଂକ 'ଅବଚେତନ ମନ ଡାକେ', ଡାକେ ନର୍ତ୍ତକୀ ଉଠ, ପୁରାଣରୁ ଶୁଣିଥିଲେ, ତପସ୍ୱୀ ମାନଂକ ତପସ୍ୟା ଭଂଗକରିବାପାଇଁ ଦେବରାଜ ଇନ୍ଦ୍ର ଏମିତି ଅପ୍‌ସରାମାନଙ୍କୁ ପଠାନ୍ତି। ଏଇ କବିତା କ'ଣ ଅପ୍‌ସରାଯେକି ତାଂକ ତପସ୍ୟା ଭଂଗକରିବାକୁ ଆସିଚି। ଏଇ ଗାଏନେକ୍ ସିଲଭର୍‌ଟେଲ୍ ଓ ଅନ୍ୟମାନେ ଏମାନେ ବି ବୋଧେ କାମଦୂତ। ସମସ୍ତେ ମିଳି ଯେମିତି ତାକୁ ବଦ୍‌ନାମ୍ କରିବାକୁ ଉଦ୍ୟତ।

ଏବେ ତାକଂର ନ ଯଯୌ ନ ତସ୍ଥୌ ଅବସ୍ଥା, କ'ଣ କରିବେ ସେ, ଚିନ୍ତା କରିପାରୁନାହାଁନ୍ତି। ଏଇମିତି ଚିନ୍ତାକରି ସେ ଦଶହଜାର ମୁଦ୍ରା ସଞ୍ଚିତ ଥଳିରୁ ନେଇ ବାହାରିଲେ କବିତା ଘରମୁହାଁ, ଅନ୍ୟମନସ୍କ ଭାବେ ଚାଲିବାରୁ ସେ ବାଟରେ ଦି'ଦି'ଥର ଝୁଣ୍ଟିଚନ୍ତି, ତଥାପି ଚାଲିଚନ୍ତି। ନିଜର ସମସ୍ୟା ତାଙ୍କୁ ନିଜେ ସମାଧାନ କରିବାକୁ ପଡ଼ିବ। ତା'ଙ୍କ ପାଇଁ ଆଉ କ'ଣ କିଏ ଏ'କାମ କରିବ।

ଏଇମିତି ଭାବୁଭାବୁ ସେ କବିତା ଘର ଦୁଆର ମୁହଁରେ ପହଞ୍ଚିଲେ ଦେଖିଲେ କବାଟ ବାହାରୁ ବନ୍ଦଥିଲା ସେଇଠି କେବଳ ଗୋଟିଏ ମାଟିପାତ୍ରରେ ଖୁଦ ଆଉ ଗୋଟେ ମାଟିପାତ୍ରରେ ଚାଉଳ ଥିଲା ଗୋଟେ ଡ଼ବାରେ ମୁଢ଼ିଥିଲା ଡବାଟିକୁ ଖୋଲିଦେଲେ ପଣ୍ଡିତେ। କ'ଣ କହିବେ! ସେଠି ଚିଠିଟିଏ ଥିଲା ସେଥିରେ କବିତା ଲେଖିଥିଲା, ମହାଅନ୍ନ ମୁଁ ଆପଣଂକୁ ଭଲପାଏ ଆଉ ପାଉଥିବି, ହେଲେ ମୋ' ପାଇଁ ଆପଣ ନିଜେ ଅପମାନିତ ହେବେ ଏଇ ଭୟରେ ପଞ୍ଚାୟତ ପୂର୍ବରୁ ମୁଁ ଏକ ଅନ୍ୟଜାଗାକୁ ବୁଢ଼ୀମା'କୁଧରି ପଳାଇଚି! ଆପଣ ବ୍ୟସ୍ତ ହେବେ ନାହିଁ, ଭଲରେ ଶିବରାତ୍ରୀ ପାଳିବେ, ପାରାମନଂକୁ ଖାଇବାକୁ ଦେବେ।

ପଣ୍ଡିତେ ଚିଠି ପଢ଼ି କାନ୍ଦିପକେଇଲେ, ସେ ଖୁଦ, ମୁଢ଼ି ସବୁକୁ ଗୋଇଠାମାରି ଭାଂଗିଦେଲେ ସବୁ ବୁଣିଗଲା କବିତା ଘରର ଟାଇଲ୍‌ଛାତ ଉପରେ ହୋର୍‌ଫେସ୍ ଘର

ଉପରେ ଥାଇ ସବୁ ଦେଖୁଥିଲା, ଘୁମ୍‌ରିଲା କିନ୍ତୁ ତଳକୁ ଆସି ଖାଇଲା ନାହିଁ ତା'ମନ ଦୁଃଖ ହେଇଯାଇଥିଲା।

କବିତା ଗଲାପରେ ପାରାମାନଂକ ମନଭିତରେ ଦୁଃଖର ସୀମା ରହିଲା ନାହିଁ, ପରଦିନ ସକାଳେ ଦେଖାଗଲା ଯେ ଭଂଗା ମାଟିଘଡ଼ି ପାଖେ ବୁଣିହେଇଯାଇଚି ଖୁଦ, ମୁଢ଼ି ଆଉ ଚାଉଳ, କୁଆ ଆସି ଖାଉଚି। ହେଲେ ପାରାମାନେ ଦେଖୁଚନ୍ତି ପଛେ ଖାଉନାହାନ୍ତି, କବିତା ଚାଲିଯିବାଟା ଖାଲି ପଣ୍ଡିତଂକୁ ନୁହଁ, ପାରାମାନଂକୁ ଆଉ ପାଖ ପଡ଼ୋଶୀଙ୍କୁ ବି ମର୍ମାହତ କରିଚି। ଯୋଉ କୁନି ପୁଅଝିଅ ମାନେ ତା' ପାଖେ ପଢୁଥିଲେ ସେମାନେ ବି ଦୁଃଖ କଲେ, ଗୁରୁମା' କିଛି ନକହି କେମିତି ଚାଲିଗଲେ, ଏ'କଥା ସେମାନେ ଭାବିଲେ।

ପଣ୍ଡିତେ ଆଜି ମନେପକଇଚନ୍ତି ତାଂକ ପିଲାଦିନ ବେଳର କଥା ସଭିଏଁ କହନ୍ତି ପିଲାଦିନେ ସେ ବଡ଼ ଦୁଷ୍ଟ ଥିଲେ, ଠାକୁରଂକ ବଡ଼ା ଭୋଗ ଲଡୁ ଖାଇଯାଉଥିଲେ ଆଉ ବୋଉଠୁ ଏଥିପାଇଁ ଅନେକ୍ ମାଡ଼ଖାଇଚନ୍ତି। ତାଂକ ବାପା ସଂସ୍କୃତ ଟୋଲ୍‌ର ମାଷ୍ଟ୍ରେ ଥିଲେ, ପରମାନନ୍ଦ ବାପାଠୁ ବହୁତ୍ ମାଡ଼ ଖାଇଥିଲେ ହେଲେ ସେତେବେଳର ଦିନ କେତେ ଭଲ ଥିଲା, ସେତେବେଳେ କଥା ଆଉ ଆଜି କଥା ଛିଃ। ହିଂସା, ଦ୍ୱେଷ, ଈର୍ଷା, ହତ୍ୟା, ଏବେ ଗାଁ ଜୀବନକୁ କଳୁଷିତ କରିଛି ଅମୃତ ପ୍ରେମର ସ୍ଥାନ ଏବେ କୋଉଁଠି ନାହିଁ। ପରିସ୍ଥିତି ଏପରି ହେଲାଣି ପ୍ରେମିକ, ପ୍ରେମିକା ଏବେ ଏ' ପୃଥ୍ୱୀରେ ବଞ୍ଚିରହିବା ହିଁ ପାପ।

ପଣ୍ଡିତେ ଠିକ୍‌କଲେ ଶିବରାତ୍ରୀ ପୂର୍ବରୁ ସେ କିଛି ବିଘ୍ନ ଘଟେଇବେ ନାହିଁ, ଠିକ୍ ଆଉ ତିନିଦିନ ଶିବରାତ୍ରୀ। ସେହିଦିନ ପରେ ସେ ତାଂକ ଜୀବନରେ ଏକ ପରିବର୍ତ୍ତନ ଘଟାଇବେ ଏ' ପାପୀ ଦୁନିଆଁରୁ ସବୁଦିନ ପାଇଁ ଚାଲିଯିବେ ବୋଲି ମନେ ମନେ ମନସ୍ଥ କଲେ।

ଗାଁ ମୁଖିଆ ଓ ସହଯୋଗୀକୁ ଆଉ ପଞ୍ଚାୟତ ଡାକିବା ଜରୁରୀ ମନେ ହେଲା ନାହିଁ, କବିତା ଆଗ ଚାଲିଯିବା ଦ୍ୱାରା ସବୁ ଅସୁବିଧା ଆପେ ଆପେ ଦୂର ହେଇଗଲା ବୋଲି ସେମାନେ ଭାବିଲେ, ଏଥର ସ୍ୱାମୀଜୀ ସେ ନାରୀ ହାବୁଡ଼ରୁ ବଞ୍ଚିଗଲେ ବୋଲି ଗାଁ ପ୍ରଧାନ କହିଲେ।

ଶିବରାତ୍ରୀର ଆୟୋଜନ ଏଥର ଚାଲିଛି କାମରେ ବ୍ୟସ୍ତ ରହି ନିଜକୁ ଭୁଲିବାକୁ ଚାହିଁଲେ ପଣ୍ଡିତେ। ହେଲେ କବିତା କୁ ଭୁଲିପାରୁନଥିଲେ କେତେବେଳ ସେ ଠାକୁରଙ୍କ ଭୋଗ ତିଆରିରେ ବ୍ୟସ୍ତ ରହୁଥିଲେ, ଟେଣ୍ଟବନ୍ଧା କାମରେ ସହଯୋଗ କରୁଥିଲେ ବେଳେବେଳେ ବି ଭାବପ୍ରବଣ ହେଇଉଠୁଥିଲେ ଆଉ କାନ୍ଦୁଥିଲେ।

ଶିବରାତ୍ରୀ ତୀରସୁଦନପୁର ଗ୍ରାମର ସବୁଠାରୁ ବଡ଼ ଯାତ୍ରା। ବାବା ବାଣେଶ୍ୱର ହେଲେ ଏ' ଅଞ୍ଚଳର ଆରାଧ୍ୟ ଦେବତା କଥାକଥାକେ ସମସ୍ତେ ବାବାଙ୍କ ରାଣ ଖାଆନ୍ତି ଆଉ ରାଣ ଖାଇଲେ ମିଛ କହନ୍ତି ନାହିଁ। କେବେ କହନ୍ତି ଏ' ହେଲେ ପ୍ରତ୍ୟେକ୍ଷ ଦେବତା ଡାକିଲେ ଓ କହନ୍ତି, ବାବା ବହୁତ ଦୟାଳୁ, ଅତି ସହଜରେ ଖୁସିହୋଇ ବର ଦିଅନ୍ତି। ଏ ଦିନରେ ଅନେକ ଲୋକେ ଗାଁ ବାହାରୁ ବି ଆସନ୍ତି। ଏଇଦିନ ଯାତ୍ରାହୁଏ। ମୀନାବଜାର, ନାଚପାର୍ଟି ପଡ଼େ। ସବୁଆଡ଼େ ପ୍ରାର୍ଥନାର ଶବ୍ଦ ଭରି ଉଠେ, ଏଥର ଏମିତି ଖୁସି ରହିବଟି, ସନ୍ଦେହ କରୁଥିଲେ ପଣ୍ଡିତ ପରମାନନ୍ଦ ସରସ୍ୱତୀ।

ସେ ମନେ ମନେ ଭୋଳାନାଥଙ୍କୁ କହୁଥିଲେ, ହେ, ବାବା ଏଇଥର ଏ' ପରମାନନ୍ଦଙ୍କୁ କ୍ଷମା କର, କାମନା ବିନାଶରେ ଦୁଃଖର ବିନାଶ୍ ଜାଣିବି ସେ କାମନା ଜାଲରେ ଛନ୍ଦି ହୋଇଯାଇଛି। ପାରାମାନଂକର ପ୍ରେମ ଦେଖି ସେ ରାଗୁଥିଲେ କିନ୍ତୁ ନିଜେ କବିତା ସ' ପ୍ରେମ ଫାଶରେ ଆବଦ୍ଧ ହେଲେ , ସେ ଠାକୁରଂକୁ ଅନୁରୋଧ କଲେ, ଏଇଥର କ୍ଷମାକର, ଶିବରାତ୍ରୀ ସୁରୁଖରୁରେ ହେଉ, ତା'ପରେ ପଛେ ଯା' ହେବାର ହେବ।

ପଣ୍ଡିତ ପରମାନନ୍ଦଙ୍କ ମାଗୁଣି ଭଗବାନ୍ ଶୁଣିଲେ ସବୁକିଛି ଆୟୋଜନ ହୋଇଗଲା। ପାରାମାନେ ବି ସେମିତି ଚୁପ୍‌ଚାପ୍‌ଥିଲେ ଯେମିତି ସୁନାପିଲା, ଚାରିଆଡ଼େ ଗହଳଚହଳ, ମହାସମାରୋହରେ ଶିବରାତ୍ରୀ ପାଳନ ହେଉଚି।

ଆଜି ଶିବରାତ୍ରୀ, ଆଜି ରାତିରେ ସ୍ତ୍ରୀଲୋକମାନେ ଦୀପାଳି ଜାଳିବେ। କବିତାର ମନ ଗୋଳେଇଘାଣ୍ଟି ହେଉଥିଲା ସେ ଥିଲେ, ନିଶ୍ଚୟ ଦୀପ ଜାଳିଥାନ୍ତା। ତଥାପି ସେ ଆଜି ମହାଦୀପ ଉଠିବା ଯାଏଁ ଉପବାସ କରିବ। ପଣ୍ଡିତଂକର ସେ ମଙ୍ଗଳକାମନା କରୁଥିଲା। ଶିବରାତ୍ରୀ ବାସିଦିନ ସେ ପଣ୍ଡିତଂକୁ ଦେଖାଦେବ ବୋଲି ଠିକ୍ କଲା। ମହାସମାରୋହରେ ପାଳିତ ହୋଇଥିଲା ଶିବରାତ୍ରୀ।

ନିଜପାଇଁ ନୁହଁ, ବରଂ ପଣ୍ଡିତଂକ ପାଇଁ ଦୁଃଖ କରୁଥିଲା କବିତା। ସ୍ୱାମୀଜୀ କେତେ ଖୁସିରେ ତା'ପାଖକୁ ଦୌଡ଼ି ଆସୁଥିଲେ, ତା'କୁ ଦେଖିବା ପାଇଁ ବିଭିନ୍ନ ଆଳ କରୁଥିଲେ କହିବାକୁ ଗଲେ ସ୍ୱାମିଜୀ ସବୁକିଛି ଥିଲେ ନିଜର ଅବଚେତନ ମନ ଭିତରେ ଙ୍କାଉଠି କେଜାଣି ପରମାନନ୍ଦଙ୍କ ପାଇଁ ଭଲପାଇବା ଥିଲା। ଏବେ ପଣ୍ଡିତେ କ'ଣ କରୁଥିବେ କେଜାଣି। କେମିତି କଟୁଥିବ ତାଙ୍କ ଦିନ ଆଉରାତି ? ସେ ପୂଜା ଠିକ୍ କରିପାରୁଥିବେ କି ନାହିଁ କବିତା ବ୍ୟସ୍ତ ହେଉଥିଲା।

ଶିବରାତ୍ରୀ ସରିଯାଇଚି, ସାରାଦିନଟା ଯାତ୍ରା ଦେଖିଦେଖି କ୍ଲାନ୍ତ ହୋଇଯାଇଚନ୍ତି। ତଥାପି ଆଜି ଶିବରାତ୍ରୀ ପରଦିନ ଅନେକ ଲୋକ ବି ମନ୍ଦିର ପରିସରରେ ଅନ୍ନ ଭୋଗ କରିଚନ୍ତି। ଆଜିବି ପଣ୍ଡିତେ ବ୍ୟସ୍ତ ଅଛନ୍ତି। ବ୍ୟସ୍ତରହି ସେ ନିଜର ଦୁଃଖକୁ କିଛି ଅଂଶରେ ଭୁଲିଛନ୍ତି।

ଦୁଃଖ ସତେ ଏକାନ୍ତ ନିଜର । ସୁଖ ବହୁତ୍ ଅଳ୍ପସମୟ ପାଇଁ ଆସେ, ପରଦେଶୀ ପ୍ରେମିକ ପରି, ରାତିରେ ଆସି ସକାଳ ପାହିଲେ ଚାଲିଯାଏ । 'ବସନ୍ତ' ସେମିତି ଋତୁଟିଏ ବୋଲି ସମସ୍ତେ ଜାଣନ୍ତି ସେଇ ବସନ୍ତ ପ୍ରେମରଋତୁ ବୋଲି ପଣ୍ଡିତେ ବି ଜାଣନ୍ତି କିନ୍ତୁ 'ବସନ୍ତ' ବୋଲି ଋତୁଟିଏ ଏବେ ଆଉ ଅନୁଭବ ହୁଏକି ? ଏବେଦିନେ ଘନଘୋର ବର୍ଷା ବେଳେ କୋଇଲି ଗାଉଥିଲା ଛାଡ଼, ଦୁଃଖ ଏକ ଋତୁ, ସେ ତିନିଶ ପଁଷଠି ଦିନ ବ୍ୟାପି ରହିଥାଏ, ସବୁଦିନିଆ ସାଥୀକୁ ଭୁଲିବାରେ ଲାଭ କ'ଣ ?

କବିତା କଥା ସବୁବେଳେ ତାଙ୍କର ମନେପଡ଼େ । ସବୁବେଳେ ଚିନ୍ତାକରନ୍ତି ତା' ସହ ଆଉଥରେ ଦେଖାହେଇଯାନ୍ତା କି ! ଏଇ କୋଳାହଳ ଆସ୍ତେ ଆସ୍ତେ ମିଳେଇଯିବା ପରେ ଯିଏ ଯେଝା କାମରେ ଲାଗିବେ, ଆଉ କ'ଣ ସେମିତି ଭାଗ୍ୟ ଆସିବ ଯେ କବିତା ଫେରିବ ?

ଆଗଭଳି ସବୁଦିନ ହୋର୍‌ଫେସ୍ କବିତା ଘର ଉପରେ ବସେ । ବସି ଅଭିମାନ୍ କଲାପରି କଣ୍ଠରେ ଘୁମ୍‌ରେ, ଲାଗେ ନୀରିହ ପକ୍ଷୀଟା ଅଭିମାନ୍ କରୁଚି । ବିଦ୍ରୋହ କରୁଚି ହେଲେ କିଛି ଲାଭ ହୁଏନି ।

ସବୁ ପାରାମାନଙ୍କ ଭିତରେ ଏଇ ମାଇପାରାଟିର ଲଢ଼େଇକରିବାର ତରିକା ଟିକେ ନିଆରା, ସିଏ ଅନ୍ୟାୟ ଦେଖିଲେ ଧିରହେଇ ରହିପାରେ ନାହିଁ, ଆଉ ଚାରିପାଖ ପାରାକୁ ନେଇ ଯୁଦ୍ଧକୁ ବାହାରିପଡେ ।

ଆଜି କାହିଁକି ପଣ୍ଡିତେ ବେଳଦେଖି ଉଦାସ ଲାଗୁଚନ୍ତି । ଶିବରାତ୍ରୀର କୋଳାହଳ ସରିଯାଇଚି, ଯାତ୍ରାର ଆଟୋପ ଆଉ ନାହିଁ । ଗାଁର ଘରମାନଂକୁ ଯେଉଁସବୁ ବନ୍ଧୁ ଆସିଥିଲେ, ସେମାନେ ଆଉ ନାହାନ୍ତି ନିଜ ନିଜ ଘରକୁ ଚାଲିଗଲେଣି, ପୁଣି ସ୍କୁଲ ଫିଟିଗଲାଣି, ପିଲାମାନେ ନିଜ ସ୍କୁଲକୁ ଗଲେଣି, ଯିଏ ଯାହାର ଜଂଜାଳଗ୍ରସ୍ତ ଜୀବନ୍‌ରେ ବ୍ୟସ୍ତ । ସେମାନେ କବିତା କଥା ମନେ ପକାନ୍ତି କି ନାହିଁ ସେମାନେ କେବଳ ଜାଣନ୍ତି ।

ପଣ୍ଡତଙ୍କୁ ଦୋଷୀ ଦୋଷୀ ଲାଗେ । କବିତା ଅଛି କୋଉଠି, ସେତେବଡ଼ ଚାକିରୀ କରିନି କି ସେମିତି କୌଣସି ବଡ଼ ବ୍ୟବସାୟ କରିନି ତେବେ ସେ ଚଳୁଛି କେମିତି ? ତା' ବୁଢ଼ୀମା'ର ଭରଣପୋଷଣ କରି ନିଜକୁ ଚଳେଇପାରୁଛି କି ନାହିଁ । ଏଠି କେମିତି ସ୍କୁଲରେ ଥିଲା ସେଠି ଯାଉଯାଉ ସେମିତି ଚାକିରୀ ପାଇଯିବ ବୋଲି କିଛି ଗ୍ୟାରେଣ୍ଟି ନାହିଁ । କବିତା କଥା ଭାବି ସେ ସବୁବେଳେ ବ୍ୟସ୍ତ ହୁଅନ୍ତି ଓ ହଉଚନ୍ତି । ସେଇ ଶେଷଦିନ ଯୋଉଦିନ ପଣ୍ଡିତେ ଯାଇଥିଲେ, ସେଦିନ ଯଦି ତା'ସହ ଦେଖାହେଇଥାନ୍ତା, ସେ କବିତାର ଠିକଣା ଜାଣିପାରିଥାନ୍ତେ । ଏମିତି ଭାବି ସେ ମନକୁ ମନ ବ୍ୟସ୍ତ ହଉଥାନ୍ତି ।

କବିତା ଅବସ୍ଥା ବି ତଦ୍ରୂପ। ବିଭିନ୍ନ ପ୍ରଶ୍ନ ବିଭିନ୍ନ ସମୟରେ ତା' ମନରେ ଉଠି ତା'କୁ କଷ୍ଟ ଦେଇଥିଲା ପଣ୍ଡିତେ କ'ଣ କରୁଥିବେ, ସୁରୁଖୁରରେ ଶିବରାତ୍ରୀ ପାଳିତ ହେଲାକି ନାହିଁ? ତା'କଥା ମନେ ପକାଉଚନ୍ତି କି ନାହିଁ, କ'ଣ କରିବ କବିତା? ଏବେ ବ୍ୟସ୍ତ ଭାବରେ କ'ଣ କେମିତି ଜୀବନ ବିତେଇବ।

ପାରାମାନଂକ ବିଷୟରେ ବି କବିତାର ମନେପଡ଼େ, ଗାଏନେକ୍ ଭଳି ଗୋଟେ ଧଳା ପାରା ଏବେ ପାରା ଦଳଭିତରେ ଅଛି ତ? ସେ ଠିକ୍ ଭାବରେ ଆଉଚିତ? ସିଲ୍‌ଭର୍‌ଟେଲ୍ ସହ ତା' ସଂପର୍କ ଠିକ୍ ଅଛିତ! ସବୁଠୁ ସେ ବେଢି ବ୍ୟସ୍ତ ହୁଏ, ହୋର୍‌ଫେସ୍ ପାଇଁ, ବିଚରା ପାରାଟି ବହୁତ ଭଲପାଏ କବିତାକୁ, ପ୍ରାୟ ଅନେକ ସମୟ ଛାତ ଉପରେ ବସି ଦେଖୁଥାଏ ସେ, ତା' ଗତିବିଧି କୁ ଲକ୍ଷ କରୁଥାଏ।

ଆଜି ଶୁଖିଲାଟାରେ ଚିଡ୍‌ଚିଡ୍ ହଉଛନ୍ତି ସ୍ୱାମୀଜୀ। ବିରକ୍ତ ହେଉଚନ୍ତି ବି ଭକ୍ତମାନଙ୍କୁ। ଲାଗୁଛି ଆଜି ସେ କିଛି ଅଲଗା ଅଲଗା କାମ କରୁଚନ୍ତି। ଆଜି ସେ ଠିକ୍‌ରେ ଗାଧୋଇପାରିନାହାନ୍ତି ଠାକୁରଙ୍କ ସକାଳଭୋଗ ବି ଠିକ୍‌ରେ କରୁନାହାନ୍ତି। ସେ ଯା'ହେଉ ସକାଳର ବାଳଧୂପ ହେଲା।

ଆଜି ପାରମାନଂକର ପୁରୁଣା ଉଗ୍ରରୂପ ବାହାରିଚି। ଏମିତି ଏକ ସମୟରେ ଦିନେ ଗାଏନେକ୍ ପଣ୍ଡିତଙ୍କ ସହ ଯୁଦ୍ଧ କରିଥିଲା, ଗାଏନେକ୍ କୁଆଡ଼େ ଥିଲା ସ୍କାଇଲାଇଟ୍‌ରେ ବସିଲା, ବୀରପରି ବସି ଘୁମରିବାକୁ ଲାଗିଲା, କୁଆଡେ ଅଛ ସିଲଭର୍‌ଟେଲ୍ ଆସ, ଏ' ପ୍ରୀତିମାସ ସିଲଭର୍‌ଟେଲ୍ କୋଉଠିଥିଲା କେଜାଣି ପୁଚ୍ଛ ଫଡ୍‌ଫଡ଼େଇବାକୁ ଲାଗିଲା ସେ ଆସିଗଲା ବୋଲି ସଂକେତ ଦେଲା ସିଲଭର୍‌ଟେଲ୍ ରୂପେଲି ଲାଞ୍ଜ ମୃଦୁ ମୃଦୁ ହଲିବାକୁ ଲାଗିଲା।

ଗାଏନେକ୍ ଏଥର ତଳକୁ ଉଡ଼ିଆସିଲା। ମନ୍ଦିର ଝରକାରେ ତାଳାରେ ବସିଲା ଭିତରକୁ ଅନେଇଲା, ଆଜି ସେ ଗୋଟେ ନୂଆକଥା କହିବାକୁ ଯାଉଚି ବୋଲି ଘୁମ୍‌ଘୁମ୍ ଘୁମ୍‌ରିଲା। ଆଜି ସେ ପ୍ରେମ କରିବ ଠାକୁରଙ୍କ ଆଗରେ। ନିଶ୍ଚେ ପ୍ରେମ କରିବ, କାହାକୁ ଡରିବ ନାଇଁ, ପଣ୍ଡିତ ପରମାନନ୍ଦ, ତୋ' ଖେଳ ଖତମ୍। ତୁ, କି ତୋ' ଠାକୁର, ତୋ' ଭକ୍ତମାନେ, ଗାଁ ମୁଖିଆ କି ତା' ବତୀପେଲା ମାନେ କେହି କିଛି କରିପାରିବେ ନାଇଁ। ଗାଏନେକ୍ ଷଣ୍ଢ ପରି ବେକକଷଣ୍ଢାକୁ ଫୁଲାଇ ରଡ଼ି କରିବାକୁ ଲାଗିଲା। ଫୁର୍‌କରି ଉଡ଼ି ପ୍ରଥମେ ଶିବଙ୍କ ଲିଙ୍ଗ ପାଖରେ ବସିଲା। ତା'ପରେ ରାଗରେ ଭୋଗ ଟୋକେଇ ଆଡ଼େ ଆଖି ପକେଇଲା। ତା' ଉପରେ ବସି ସିଲଭର୍‌ଟେଲ୍ ବିକଳ ହେଇ ତା'କୁ ଅନାଇଁଥାଏ। ଗାଏନେକ୍‌ର ସାହସକୁ ପ୍ରଶଂସା କରୁଥାଏ। ଏମିତି ଦେଖୁଦେଖୁ ସିଲ୍‌ଭର୍‌ଟେଲ୍‌ର ଗୋଡ଼ ସେଇ ଭୋଗ ଟୋକେଇ ଭିତରେ ପଶିଗଲା। ସେ ଆଉ ଉଡ଼ିପାରୁନଥାଏ। ତା'ର ଏ' ଅବସ୍ଥା ଦେଖି ଗାଏନେକ୍ ବ୍ୟସ୍ତ ହେଇ ଉଠିଲା। ବହୁତ ଚେଷ୍ଟା କଲା ତା'କୁ ରକ୍ଷା କରିବା ପାଇଁ। ଗାଏନେକ୍ ଅଭୟ

ଦଉଥାଏ। ଭୟ କରନା ମୁଁ ଅଛି। ମୁଁ ମଳାପରେ ଯାଇ କେହି ତମକୁ ହଇରାଣ କରିପାରେ।

ମନେମନେ କିନ୍ତୁ ଡରୁଥାଏ ସେ। ଏ' ସମୟରେ ଯେତେବେଳେ ସିଲ୍‌ଭର୍‌ଟେଲ୍‌ର ପାଦ ଟୋକେଇ ଭିତରେ ପଶିଯାଇଚି, ତା'କୁ ଉଦ୍ଧାର କରିବ କିଏ? ଏଇ ସମୟରେ ଯଦି ପଣ୍ଡିତ ଆଉ ତା' ଭକ୍ତମାନେ ପହଂଚନ୍ତି, ଠେଙ୍ଗାମାଡ଼ରେ ସିଲ୍‌ଭର୍‌ଟେଲ୍‌ର ପ୍ରାଣ ଯିବ ବିକଳ ହେଇ ସିଲ୍‌ଭର୍‌ଟେଲ୍ ଗାଏନେକ୍‌ର ପିଠିକୁ ଖୁମ୍ପି ପକଉଥାଏ। ଉପର ସ୍କାଇଲାଇଟ୍‌କୁ ଚାହିଁ ଘୁମ୍‌ରୁଥାଏ ଭାବୁଥାଏ। ସେଇ ଆଡ଼କୁ ଉଡ଼ିପଳାନ୍ତା କି ନା ହଇନି। ତା' ଗୋଡ଼ ଏମିତି ଠାକି ଯାଇଚି ଯେ ଆଉ ବାହାରୁନି। ସେ ଯେତେ ଝଅଟି ହଉଚି କିଛି ପର ଉପୁଡ଼ି ଯାଉଚି କିଛି ବାହାରୁନି। ଏମାନଙ୍କ ଦୁଃଖ ଦେଖି ଆଉ କିଛି ପାରା ରୁଣ୍ଡ ହେଇଚନ୍ତି। ଆଉ କିଛି କାକୁସ୍ଥ ହେଇ ସ୍ଥାନ, ଅଥାନରେ ବସି ଏ' ପରିସ୍ଥିତିରେ କ'ଣ କରିବେ ଚିନ୍ତା କରୁଚନ୍ତି।

ଏହି ସମୟରେ ଯଦି ପଣ୍ଡିତେ ଆସିଯାନ୍ତିନା କ'ଣ ହବ ଆଉ କ'ଣ ବଞ୍ଚିବ ସିଲ୍‌ଭର୍‌ଟେଲ୍। ଗାଏନେକ୍‌ର ଲୁହ ଗଡୁଥାଏ।

ପଣ୍ଡିତେ ଆଜି ଭାବୁଥାନ୍ତି ନିଜେ ନିଜକୁ ଶେଷ୍ କରିଦେବେ। ଆଜି ଦଶଟାବେଳେ ସେ ନିଜ ଭାଇ ଦେଇଥିବା ଯିଏକି ମିଲିଟାରୀରେ କାମ କରେ। ସେଇ ବନ୍ଧୁକକୁ ବାହାର କଲେ। କବିତା ଚାଲିଯିବା ଦିନ ସେ ଗାଁକୁ ଯାଇ ଭାଇର ବନ୍ଧୁକଟିକୁ ଲୁଚେଇ ଆଣିଥିଲେ ଯେ ସେ ସେଦିନ ଶପଥ କରିଥିଲେ ନିଜକୁ ଶେଷ୍ କରିବେ ଏ' ଶିବରାତ୍ରୀ ଯାଉ।

ବହୁତ କଷ୍ଟରେ ଲୁଗାଗଦା ସନ୍ଧିରେ ସେ ଲୁଚେଇଥିଲେ ବନ୍ଧୁକଟିକୁ। ସ୍ୱାମୀଙ୍କ ହାତରେ ଆଜି ବନ୍ଧୁକ ଦେଖି ଆଖପାଖର ଲୋକେ ଆଶ୍ଚର୍ଯ୍ୟ ହେଲେ। ସ୍ୱାମୀଜୀ କହିଲେ ସେ ନର୍କର ପକ୍ଷୀମାନଙ୍କୁ ଆଗ ଶେଷ୍ କରିବେ ପରେ, ନିଜ ଛାତିକୁ ଗୁଳି କରି ଆତ୍ମହତ୍ୟା କରିବେ।

ଆଜି 'ପ୍ରେମ' ଶେଷ୍ ହେବ। ଏଇ ପକ୍ଷୀମାନଙ୍କର କାମନାରୁ ଜାତ ଏ' ନିଆଁ ଆଜି ସବୁଦିନ ଲିଭିଯିବ। କାମନା ବିନାଶ୍‌ରେ ଦୁଃଖର ବିନାଶ୍ ଆଜି ସମ୍ଭବ ହେବ। ଏଇ ପକ୍ଷୀମାନଙ୍କର ଦେହଜ ପ୍ରେମ ଆଜି ତାଙ୍କୁ ବିନାଶ୍ ଆଡ଼କୁ ଟାଣିନେଲା।

ସେ ଶିବଙ୍କୁ ଶେଷ ପ୍ରଣାମ୍ କଲେ। ବୁଡ଼ିଆସୁଥିବା ସୂର୍ଯ୍ୟଙ୍କୁ ଜୁହାର୍ କଲେ। ନିଜର ପରଲୋକୀ ପିତା ଆଉ ବୁଢ଼ୀ ମାତାକୁ ପ୍ରଣାମ କଲେ। କବିତା କଥା ମନେ ପକେଇଲେ।

ସେ ଏଥର ଆସ୍ତେ ଆସ୍ତେ ମନ୍ଦିର ଆଡ଼କୁ ଚାଲିବାକୁ ଆରମ୍ଭ କଲେ। ହାତରେ ବନ୍ଧୁକ। ଦେହରେ ଗେରୁଆ ବସ୍ତ୍ର, କପାଳରେ ତିଳକ। ଆଜି ସେ ସବୁକିଛି ଜାଳିପୋଡ଼ି

ଛାରଖାର କରିଦେବେ। ସବୁକିଛି ଧ୍ୱଂସ କରିଦେବେ ଓ ନିଜେ ନଷ୍ଟ ହେଇଯିବେ। ଏଇ କେତେଦିନ ଚାଲିଥିବା ଗୋଟେ ଅଶାନ୍ତ ବାତାବରଣର ଆଜି ଯବନିକା ପାତ ହେବ।

ଚାଲିଲେ ବନ୍ଧୁକ ଧରି ସ୍ୱାମୀଜୀ ସନ୍ତ୍ରାସବାଦୀ ପରି। ଆଜି ତାଙ୍କୁ କେହି ରୋକିବାକୁ ସାହସ୍ କରୁନାହାନ୍ତି। କରିବେ ବା କେମିତି! ସେଠାରେ ଥିବା ଭକ୍ତଗଣ ଭାବୁଥିଲେ ସ୍ୱାମୀଜୀ ପାଗଳ ହେଇଗଲେ ବୋଧେ।

ସେ ଯେତେବେଳେ ମନ୍ଦିର ଭିତରେ ପଶନ୍ତି ଦେଖିଲେ ସେଠି ଅଜବ୍ ଦୃଶ୍ୟ ଚାରିଆଡ଼େ ଦଶ, ପନ୍ଦର ପାରା ସିଲ୍‌ଭର୍‌ଟେଲ୍ ଗୋଡ଼ ଭୋଗ ଟୋକେଇରେ ଠାକି ଯାଇଚି। ପାଖରେ ଗାଏନେକ୍ ଜଗିଚି। କେତେବେଳେ କାନ୍ଦୁଚି ତ କେତେବେଳେ ପାଗଳ ଭଳି ଘୁମ୍‌ରୁଚି।

ପାଟି କଲେ, ପଣ୍ଡିତେ 'ନର୍କର ପକ୍ଷୀ, ତମର ଏତେ ସାହସ, ଏକେରେ ତ ଠାକୁର ଘର ଭିତରକୁ ଆସିଲ, ପୁଣି ଭୋଗ ସବୁ ଲୁଟି ନେବାକୁ ବସିଲ। ଯାହା କଲ କଲ ପୁଣି ଏଠି ମରି ଅପବିତ୍ର କରିବାକୁ ଆସିଚ? ଆଜି ସମସ୍ତେ ମରିବ। କେହିବି ପିଠିରେ ପଡ଼ିବେ ନାହିଁ।

ବନ୍ଧୁକ ଉଠାଇଲେ ସ୍ୱାମୀଜୀ। ଯଦିଓ ଜାଣିଥିଲେ ଯେ ତାଙ୍କ ହାତରେ ବନ୍ଧୁକ ଶୋଭା ପାଇନାହିଁ। ସେ ବନ୍ଧୁକ ଉଠାଇବା କ୍ଷଣି ଫଡ୍‌ଫଡ୍ ହେଇ ଉଡ଼ିଗଲେ ଦି' ଚାରିଟା ପାରା ଉଡ଼ି ପୁଣି ବସିଲେ। ସିଲ୍‌ଭର୍‌ଟେଲ୍ ଅବିଚଳିତ। ଗାଏନେକ୍ ଟିକିଏ ବି ଡରିଲା ନାହିଁ। ସାହସୀ ବୀର ପରି ସିଲ୍‌ଭର୍‌ଟେଲ୍ ଆଗରେ ଠିଆ ହେଇ ବଡ଼ପାଟିରେ ଘୁମ୍‌ରିଲା।

କୁଆଡୁଥିବା ସେଦିନ ଦଶ ଦଶଟା ପାରାକୁ ଧରି ଉଡ଼ି ଆସିବା ହୋରଫେସ୍। ତା' ଆଖି ଆଗରେ ଆଜି ଏ' କ'ଣ ସେ ଦେଖୁଚି! ପଣ୍ଡିତଙ୍କ ହାତରେ ବନ୍ଧୁକ। ଭାଉଜର ଗୋଡ଼ ଟୋକେଇ ଭିତରେ। ଭାଇ କାନ୍ଦୁଚି ହୋର୍‌ଫେସ୍ କ'ଣ କରିବ ବୁଝିପାରିଲା ନାହିଁ। ଦଣ୍ଡେ ହତବାକ୍ ହେଇ ବସି ପଡ଼ିଲା। ତା'ପରେ ଜୋର୍‌ରେ ଘୁମ୍‌ରି ଚକ୍ରାକାର ଉଡ଼ିଲା। ଏଗ୍‌ଦମ୍ ଜୋର୍‌ରେ ତଳକୁ ଖସି ଭୋଗ ଟୋକେଇ ଅଣ୍ଟ ଖିନ୍‌ଭିନ୍ କଲା।

କୋଡ଼ିଏ ତିରିଶ୍ ପାରାଙ୍କ ଖୁମ୍ପାରେ, ସେ ଟୋକେଇର ବେତ ଭାଙ୍ଗିଗଲା। ସିଲ୍‌ଭରଟେଲ୍ ତା' ପାଦ ସେଥିରୁ ବାହାରିଲା। ସେ ଚାହିଁଥିଲେ ଉଡ଼ିଯାଇପାରନ୍ତା ହେଲେ ସେଠାରେ ଉପସ୍ଥିତ କୋଡ଼ିଏ ବାଇଶି ପାରା କେହି ଉଡ଼ିଲେ ନାହିଁ। ଯୁଦ୍ଧ ଆଉ ପ୍ରେମ ପାଇଁ ସମସ୍ତେ ପ୍ରସ୍ତୁତ। ଗାଏନେକ୍ ଏଥର ସିଲ୍‌ଭରଟେଲ୍‌ର ଲାଞ୍ଜ ଦେଇ ପିଠି ଉପରକୁ ଉଠିଲା। ବେକ ମୋଡ଼ି ତା'କୁ ଚୁମା ଦେଲା। ଏଥର ଭରପୂର ଜୋରଦେଇ ଦୁହେଁ ସଂଗମ କରିବାକୁ ଲାଗିଲେ। ହୋର୍‌ଫେସ୍ ଓ ତା' ପାରାମାନେ ସବୁ ଚକ୍ରାକାରରେ

ବସି ଯେକୌଣସି ଖରାପ ମୁହୂର୍ତ୍ତକୁ ଅପେକ୍ଷା କରୁଥାନ୍ତି । ଓଁ ନମଃ ଶିବାୟ କହି ବନ୍ଧୁକ ଉଠେଇଲେ ପରମାନନ୍ଦ ବନ୍ଧୁକର ମୂନ ସଂଗମରତ ପକ୍ଷୀଙ୍କ ଆଡ଼କୁ ରଖିଲେ । ଟ୍ରିଗାର୍ ଦବେଇ ବାକୁ ଯାଉଚନ୍ତି । ଉପରକୁ ହଠାତ୍ ଟେକିଦେଲେ କବିତା, କୁଆଡୁ ଆସି । ଏ' କଣ କରୁଚନ୍ତି ସ୍ୱାମୀ । ଆପଣ ପୂଜକ, ପ୍ରେମିକ, ହତ୍ୟାକାରୀ ନୁହେଁ । ନା' ନା' ମୋତେ ଛାଡ଼ କହି ପରମାନନ୍ଦ ଭୋ' ଭୋ' ହେଇ କାନ୍ଦି ପକେଇଲେ । ସିଲ୍‌ଭର୍‌ଟେଲ୍ ଘୁମ୍‌ରିଲା ଆନନ୍ଦରେ । ଗାଏନେକ୍ ସ୍ତବ୍ଧ ହେଇ ଚାହିଁଲା, ହୋର୍‌ଫେସ୍ ଉଡ଼ି ଆସି କବିତାଙ୍କ ପାପୁଲିରେ ବସି ଚୁମା ଦେଲା । ସ୍ୱାମୀଜୀଙ୍କ ପାଦଧୂଳି ନେଲେ କବିତା । ଶିବଙ୍କୁ ସାକ୍ଷୀ ରଖି ଆଉଜେଇ ଆଣିଲେ କବିତାଙ୍କୁ ସ୍ୱାମୀଜୀ । ପାରାମାନଙ୍କର ଘୁମ୍‌ରା ଚଉଦିଗ କମ୍ପେଇ ଦେଲା ଯେମିତିକି ଶଂଖନାଦ ।

କବିତା ଗାଇ ଉଠିଲେ, ତମସୋର୍ମାଂ ଜ୍ୟୋତିର୍ଗମୟ, ଜାଗ ଜଗତର ସ୍ୱାମୀ, ଜୀବନ୍ ଏବେବି ଉଜାଗର, ହଁ ଉଜାଗର, ଦାରିଦ୍ର୍ୟ ଦୁଃଖ ଦହନାୟ ନମଃ ଶିବାୟ । ନମଃ ଶିବାୟ ।

ଏବେ ରୁଦ୍ରଙ୍କ ପାଦ ଅଥୟ । ସେ ନଟରାଜ ମୁଦ୍ରାରେ । ସୃଷ୍ଟି ପାଇଥିବା ଉଦାତ୍ତ କଣ୍ଠରେ ଶିବତାଣ୍ଡବ । ସ୍ୱାମୀଜୀଙ୍କ ଆଖି ମୁଦିମୁଦି ହେଇ ଆସୁଥିଲା ।...





ସାଂପ୍ରତିକ ଓଡିଆ ସାହିତ୍ୟ ଜଗତରେ ଏକ ବହୁ ପରିଚିତ ନାମ । ଗଳ୍ପ, କବିତା, ରମ୍ୟ ରଚନା, ପ୍ରବନ୍ଧ, ଫିଚର ଓ ଉପନ୍ୟାସ ରଚନା ଆଦି କ୍ଷେତ୍ରରେ ନିଜର ଦକ୍ଷତା ପ୍ରମାଣିତ କରିଥିଲେ ହେଁ ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗକୁ ଅନୁବାଦ କରି ଅନେକ ସମୟରେ ଚର୍ଚ୍ଚିତ ହୋଇପାରିଛନ୍ତି । ସେ ବହୁ ସଫଳ କବିତା ରଚନା କରି ଓଡିଆ ସାହିତ୍ୟ ଜଗତରେ ସ୍ୱତନ୍ତ୍ର ଆସନର ଅଧିକାରୀ ହୋଇଥିବାରୁ ତାଙ୍କର ଅନୁବାଦ ସାହିତ୍ୟ ମଧ୍ୟ କାବ୍ୟିକ ଓ ଶାଣିତ ହୋଇଯାଏ । ୰ ମୁଲକ୍ ରାଜ ଆନନ୍ଦଙ୍କ ଇଂରାଜୀ ଗଳ୍ପକୁ ନୂତନ ଢଙ୍ଗରେ ସୃଜନାତ୍ମକ ଶୈଳୀରେ ଚତୁରତାର ସହିତ ଉପନ୍ୟାସ ରଚନା କରି ଓଡିଆ ପାଠକଙ୍କୁ ଏକ ଭିନ୍ନ ବିଷୟବସ୍ତୁ ସହ ପରିଚୟ କରାଇଛନ୍ତି । ଉପନ୍ୟାସଟି ଅଧ୍ୟୟନ କରିବା ସହ ପାଠକଟି ବିଭୋର ହୋଇଯିବ ନିଶ୍ଚୟ ।

